# ଶ୍ରଦ୍ଧାଞ୍ଜଳି



୧.୦୨.୧୯୧୫ ୧୦.୦୩.୨୦୦୬



ମୃତ୍ୟୁ ରିଶେ - ଦ୍ୱିପଦାମ୍, ମୃତ୍ୟୁ ରିଶେ ଚତୁଃଷ୍ପଦାମ୍
ତସ୍ମାଦ୍ତ୍ୱାମ ମୃତ୍ୟୁଃ ଗୋପତେଃ ଉଦ୍ଭରାମି ସମା ବିଭେଃ ॥ ଅଥର୍ବ ୮/୨/୨୩ ॥

ମୃତ୍ୟୁର ଶାସନରେ ଦୁଇପଦ ଓ ଚତୁଃଷ୍ପଦ ମାନଙ୍କ ଜୀବନଭାର ନିହିତ । ଯେ କର୍ମକୁଶଳ, ଧାର୍ମିକ ତଥା ପ୍ରଭୁ ସମର୍ପିତ ହୋଇ ଜୀବନର ଲକ୍ଷ୍ୟକୁ ସର୍ବାତ୍ମନା ସଫଳ କରାଏ, ସେ ମୃତ୍ୟୁଞ୍ଜୟୀ ହୋଇଯାଏ । ମୃତ୍ୟୁ ଭୟର କାରଣ ନୁହେଁ ବରଂ ଅମୃତ ପ୍ରାପ୍ତି ପାଇଁ ବାଧା ସମୂହର ନିରାକରଣ ।

## ସଂପାଦନା ମଣ୍ଡଳୀ

ଡା. କୈଳାସ ଚନ୍ଦ୍ର ନାଥଶର୍ମା
ଶ୍ରୀମତୀ ସବିତା ନାଥ
ଶ୍ରୀମତୀ ଅଂଜଳି ନାଥ
ଶ୍ରୀ ଧୀରେନ୍ଦ୍ର କୁମାର ନାଥ
ଡା. ଅରୁଣ ଚନ୍ଦ୍ର ସେଠୀ

## ପ୍ରକାଶିକା

ଶ୍ରୀମତୀ ବୀଣାପାଣି ନାଥ
ଶ୍ରୀମତୀ ଭକ୍ତିଲତା ନାଥ

## ପରିକଳ୍ପନା

ସୃଜନ ପ୍ରକାଶ ଦାସ

ଡିଟିପି/ଲେଆଉଟ୍/ଡିଜାଇନ୍ ଓ ମୁଦ୍ରଣ
**ତୀରତରଙ୍ଗ ପ୍ରକାଶନ**
କଟକରୋଡ୍, ଭୁବନେଶ୍ୱର
ଦୂରଭାଷ : ୦୬୭୪-୨୩୮୦୧୫୭

ପ୍ରକାଶ କାଳ : ୨୦.୦୩.୨୦୦୬

**ଯୋଗାଯୋଗ :**
୬୮୯, ସହିଦ ନଗର, ଭୁବନେଶ୍ୱର
ଦୂରଭାଷ : ୦୬୭୪-୨୫୪୭୧୫୩






**ଅପେତ ବୀତ ବି ଚ ସର୍ପତାତୋଽସ୍ମା ଏତଂ ବିତରୋ ଲୋକ ମକ୍ରନ**
**ଅହୋଭିରଦ୍‌ଭି ରକ୍ତୁଭିର୍ବ୍ୟକ୍ତଂ, ଜମୋ ଦଦାତ୍ୟବ ତ୍ୟବସାନ ମସ୍ମୈ ॥**

॥ ଋଗ୍‌ବେଦ ୧୦/୧୪/୨୩ ॥

ସଂସାର ବାସନାରୁ ଦୂର ହୁଅ । ଦୂରକୁ ଯାଅ । ମନରୁ ଏ ଚିନ୍ତା ଦୂର କର । ଏ ମର୍ତ୍ତ୍ୟ ଲୋକର ସମସ୍ତ ଉଦ୍ଦିଷ୍ଟ କାର୍ଯ୍ୟକୁ ଯଥାର୍ଥ ଭାବେ କରିଯାଅ । ପ୍ରକାଶମୟ ଜୀବନଯାପନର ସକଳ ପ୍ରୟାସ କରିବାକୁ ଯତ୍ନ କର । କ୍ଳାନ୍ତ ହୁଅନା । ଯଦି ଏପରି ଜୀବନର କେଉଁ କ୍ଷଣରେ ମୃତ୍ୟୁ ଆସେ ତେବେ ତାହା ବିଶ୍ରାମ ପରି । ବିଶ୍ରାମ ପରେ କାର୍ଯ୍ୟ କରିବାର ନୂଆ ଉନ୍ମାଦନା ପରି ପୁଣି ଦିବ୍ୟ ଜନ୍ମରେ ହିଁ କର୍ମ ପାଇଁ ପ୍ରେରଣା ମିଳିବ ।

  

# ସ ମ ର୍ପ ଣ ...



ଦୀର୍ଘ ଏକାନବେ ବର୍ଷର ଏକ ସଫଳ ଜୀବନଯାତ୍ରାକୁ
ସାଙ୍ଗ କରି ସମସ୍ତଙ୍କ ପ୍ରିୟ, ଅଜାତଶତ୍ରୁ ପ୍ରଫେସର ଶତ୍ରୁଘ୍ନ ନାଥ
ମାର୍ଚ୍ଚ ମାସ ୧୦ତାରିଖ ରାତି ୧୧ଟା ୨୫ରେ
ଇହଧାମ ତ୍ୟାଗ କଲେ । ତାଙ୍କର ସରଳତା ଓ
ମଣିଷ ପଣିଆ ତାଙ୍କୁ ସମସ୍ତଙ୍କ ହୃଦୟର ନିକଟବର୍ତ୍ତୀ କରିପାରିଥିଲା ।
ତାଙ୍କ ସ୍ମୃତିରେ ଏକ ସ୍ମରଣିକା ପ୍ରକାଶ କରିବାର
ଯୋଜନା ସ୍ଥିରିକୃତ ହେବା ପରେ
ଓଡ଼ିଶାର କୋଣଅନୁକୋଣରୁ ବହୁ ବିଶିଷ୍ଟ ବ୍ୟକ୍ତି ଓ
ଶତ୍ରୁଘ୍ନ-ଶ୍ରଦ୍ଧାଳୁ ଶୋକ ବାର୍ତ୍ତା ଓ ଲେଖା ପଠାଇଛନ୍ତି ।
ଏହା ଆମକୁ ଅଭିଭୂତ କରିଛି ଓ ଏହି ଦୁର୍ଦ୍ଦିନରେ
ସାନ୍ତ୍ୱନା ଦେବା ସହ ତାଙ୍କ ବିୟୋଗାତ୍ମକ ଦୁଃଖକୁ ସହ୍ୟ କରିବାକୁ
ସାହସ ଯୋଗାଇଛି । ସ୍ୱଳ୍ପ ସମୟ ମଧ୍ୟରେ ଆମେ ସବୁ
ଲେଖାକୁ ସ୍ଥାନ ଦେଇ ଏକ ସ୍ମରଣୀୟ ସ୍ମରଣିକା ପ୍ରକାଶ କରିବାର
ପ୍ରୟାସ କରିଛୁ । ତାହା ହିଁ ଦିବଂଗତ
ଆତ୍ମାଙ୍କ ପ୍ରତି ଆମ ସମସ୍ତଙ୍କର ଶ୍ରଦ୍ଧାଞ୍ଜଳି ।

ସଂପାଦକ ମଣ୍ଡଳୀ



# ଶ୍ରଦ୍ଧାଞ୍ଜଳି ବାଢ଼ିଛନ୍ତି ...

ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ
ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ
ଶ୍ରୀ ମନମୋହନ ସାମଲ
ଶ୍ରୀ ଜୟନାରାୟଣ ମିଶ୍ର
ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ
ଶ୍ରୀ ନରେନ୍ ପଲେଇ
ଶ୍ରୀ ବିକ୍ରମ କେଶରୀ ବର୍ମା
ଅଧକ୍ଷ, କର୍ମଚାରୀ ଏବଂ ଛାତ୍ରଛାତ୍ରୀ ବୃନ୍ଦ
ନବକୃଷ୍ଣ ଚୌଧୁରୀ ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, ଅନୁଗୁଳ

ସୁରେନ୍ଦ୍ର ମୋହନ ପାଣୀ
ଅଧକ୍ଷ, ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ
ଛାତ୍ରଛାତ୍ରୀ, ଶିକ୍ଷକ ଓ କର୍ମଚାରୀବୃନ୍ଦ
ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ

ସଂପାଦକ, ପୁରାତନ ଛାତ୍ର ସଂସଦ
ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ

ଅଧକ୍ଷ, ନଳିନୀଦେବୀ ମହିଳା କଲେଜ, ଭୁବନେଶ୍ୱର

ସେବକ ତ୍ରିପାଠୀ

ବ୍ରହ୍ମାବଧୂତ ଜୟକୃଷ୍ଣ ବାବା
ଫକୀର ହରିଚନ୍ଦନ
ପ୍ରଫୁଲ୍ଲ ତ୍ରିପାଠୀ
ବଂଶୀଧର ଭୋଇ
ସନାତନ ମହାନ୍ତି
ସାଧୁ ଅନାମ ଚରଣ ଦାସ
ମହାପାତ୍ର ନୀଳମଣି ସାହୁ
ଯୁଗଳ କିଶୋର ପଟ୍ଟନାୟକ
ରବିନାରାୟଣ ସେନାପତି
କିଶୋର ଚନ୍ଦ୍ର ଦାସ
ଶାନ୍ତନୁ କୁମାର ଆଚାର୍ଯ୍ୟ
ରାଖାଲ ଚନ୍ଦ୍ର ଦାସ
ବାସୁଦେବ ସାହୁ
ଉମାକାନ୍ତ ଜେନା
ବୀରେନ୍ଦ୍ର କୁମାର ପଣ୍ଡା
ଅଧାପକ କରୁଣାକର ପରିଡ଼ା
ନୃସିଂହ ଚରଣ ପଣ୍ଡା
ପ୍ରଫେସର ସୁରେନ୍ଦ୍ର ମୋହନ ପାଣୀ
ଇନ୍ଦୁକେଶ୍ୱର ସାହୁ
ଶୈଳବାଳା ମିଶ୍ର

ସରୋଜିନୀ ପରିଜା
ରମାକାନ୍ତ ରାଉତ
ଡା. ଅରୁଣ ଚନ୍ଦ୍ର ସେଠୀ
ଶ୍ରୀମତୀ ତିଳୋତ୍ତମା ସେଠୀ
ବିଜୟ ନାୟକ
ଡାକ୍ତର ଜଗନ୍ନାଥ ମହାପାତ୍ର
ପ୍ରଫେସର ନାରାୟଣ ବେହେରା
ନରସିଂହ ସାହୁ
କାଳିକୁମାର
ସୁଧାକର ରାଉତ
ସୁଧାକର ନନ୍ଦ
ଠକୁର ବାଉଧର ସାହ
ଦୀନବନ୍ଧୁ ମିଶ୍ର
ଅପୂର୍ବ ରଂଜନ ରାୟ
ମହେନ୍ଦ୍ର ପ୍ରସାଦ ରାଉତ
ମୁରଲୀଧର ପଣ୍ଡା
ଜଗନ୍ନାଥପୁର, ଭଦ୍ରକ
ଶ୍ରୀମତୀ କାନନବାଳା ପାଣୀ
ସଦାଶିବ ନାୟକ
ପ୍ରଫେସର ଜଗନ୍ନାଥ ମହାନ୍ତ
ଶ୍ରୀ ସୁରେନ୍ଦ୍ର ପ୍ରସାଦ ରାଉତ
ଅଭୟ ମିଶ
ଆଚାର୍ଯ୍ୟ ଭାବାନନ୍ଦ
ସଂଘମିତ୍ରା
ଭାଗୀରଥି ନାୟକ
ଡ. ଏକାଦଶୀ ପ୍ରଧାନ
ଶ୍ରୀମତୀ ଶାନ୍ତିଲତା ମିଶ୍ର
ଡ. ତ୍ରିନାଥ ହୋତା
ଚିନ୍ତାମଣି ଆଚାର୍ଯ୍ୟ
ଅଂଜଳି
ସତ୍ୟସ୍ୱରୂପ (ଗଗଲୁ)
ଡ. ଦୋଳଗୋବିନ୍ଦ ଶାସ୍ତ୍ରୀ
ଡ. କୈଳାସ ଚନ୍ଦ୍ର ନାଥଶର୍ମା(R)
ଅନୁପମା ନାଥଶର୍ମା
Shilpa Anupurba
Anisha Avijeeta (Bubu)
Sikta Suman (Lolly)
Kukumuna
Dhirendra Kumar Nath
Nirupama Nathsarma
Sankalpa Anukul (Bapun)



# ଶୋକବାର୍ତ୍ତା

## ରାଜ୍ୟ ଜଣେ ମହାନ ଶିକ୍ଷାବିତ୍‌ଙ୍କୁ ହରାଇଲା

**ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ**
**ମାନ୍ୟବର ଆଇନ, ଶିଳ୍ପ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ**

ପ୍ରବୀଣ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ବିୟୋଗରେ ଆଇନ, ଶିଳ୍ପ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଗଭୀର ଶୋକ ପ୍ରକାଶ କରିଛନ୍ତି । ଏକ ଶୋକ ବାର୍ତ୍ତାରେ ମନ୍ତ୍ରୀ ଶ୍ରୀ ହରିଚନ୍ଦନ କହିଛନ୍ତି ଯେ, ଭଦ୍ରକର ଉତ୍ତରବାହିନୀ ଗ୍ରାମରେ ଜନ୍ମ ଗ୍ରହଣ କରି ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଶିକ୍ଷା ସମାପ୍ତ କରିଥିବା ପ୍ରଫେସର ଶତ୍ରୁଘ୍ନ ନାଥ କେବଳ ଓଡ଼ିଶା କାହିଁକି, ଶିକ୍ଷା କ୍ଷେତ୍ରରେ ଦେଶର ଏକ ପ୍ରତିଭାଦୀପ୍ତ ବ୍ୟକ୍ତିତ୍ୱ । ଭଦ୍ରକ କଲେଜ ଠାରୁ ଆରମ୍ଭ କରି ନଳିନୀ ଦେବୀ କଲେଜ ପର୍ଯ୍ୟନ୍ତ ବହୁ ଉଚ୍ଚକୋଟୀର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାରେ ତାଙ୍କର ଅବଦାନ ଥିଲା ଅତୁଳନୀୟ । ଶିକ୍ଷାର ମୌଳିକତାକୁ ବଜାଇ ରଖି ଏହାର ଗୁଣାତ୍ମକ ବିକାଶ ସାଧନ ଦିଗରେ ସେ ଅନେକ ପ୍ରଚେଷ୍ଟା କରିଛନ୍ତି । ଜଣେ ନିରାଡମ୍ବର, ସରଳ, ଛାତ୍ରବତ୍ସଳ ଶିକ୍ଷାବିତ୍ ଭାବରେ ତାଙ୍କର ସୁନାମ ଥିଲା । ମହିମା ଧର୍ମ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ଓଡ଼ିଆ ଓ ଇଂରାଜୀ ଭାଷାରେ ମହିମା ଧର୍ମ ଉପରେ ସେ ବହୁ ପୁସ୍ତକ ଲେଖିଛନ୍ତି । ତାଙ୍କ ରଚିତ 'ଆମ ଯୁଗର କଥା', 'ମୌଳିକ ଶିକ୍ଷାନୀତି', 'ବିଶ୍ୱ ବନ୍ଧୁ', 'ଭକ୍ତକବି ଭୀମ ଭୋଇ', 'ଆମେ ଓ ସେମାନେ' ଆଦି ଅନେକ ପୁସ୍ତକ ଓ ବହୁ ପାଠ୍ୟପୁସ୍ତକ ତାଙ୍କ ବହୁମୁଖୀ ତଥା ପ୍ରଚଣ୍ଡ ପ୍ରତିଭାର ଯଥାର୍ଥ ପ୍ରତିଫଳନ ଥିଲା । ତାଙ୍କ ବିୟୋଗରେ ରାଜ୍ୟ ଜଣେ ମହାନ ଶିକ୍ଷାବିତ୍‌ଙ୍କୁ ହରାଇଲା । ଏହା ବାସ୍ତବିକ୍ ଏକ ଅପୂରଣୀୟ କ୍ଷତି । ଆଇନମନ୍ତ୍ରୀ ଶ୍ରୀ ହରିଚନ୍ଦନ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜ୍ଞାପନ କରିଛନ୍ତି ।

## ମୋତେ ଦାରୁଣ ଆଘାତ ଲାଗିଛି

**ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ**
**ମାନ୍ୟବର ଅର୍ଥମନ୍ତ୍ରୀ, ଓଡିଶା**

ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ବିୟୋଗରେ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ଗଭୀର ଶୋକ ପ୍ରକାଶ କରିଛନ୍ତି ।

ମନ୍ତ୍ରୀ ଶ୍ରୀ ଘଡ଼ାଇ ଏକ ଶୋକ ବାର୍ତ୍ତାରେ କହିଛନ୍ତି ଯେ, 'ସ୍ୱର୍ଗତ ନାଥ ଏକାଧାରାରେ ଜଣେ ଶିକ୍ଷାବିତ୍, ସୁସାହିତ୍ୟିକ, ଛାତ୍ରବତ୍ସଳ, ବନ୍ଧୁବତ୍ସଳ, ସରଳ, ମିଷ୍ଟଭାଷୀ ଓ ପରୋପକାରୀ ବ୍ୟକ୍ତି ଭାବେ ସୁପରିଚିତ ଥିଲେ । କଲେଜ ପଢ଼ା ସମୟରେ ସେ ମୋର ଗୁରୁ ଥିଲେ । ପାଠ ପଢ଼ି ସୁନାଗରିକ ହେବା ପାଇଁ ମୁଁ ତାଙ୍କଠାରୁ ପ୍ରେରଣା ପାଇଥିଲି । ତାଙ୍କ ସହିତ ଓ ତାଙ୍କ ପରିବାରବର୍ଗଙ୍କ ସହିତ ମଧ୍ୟ ମୋର ବ୍ୟକ୍ତିଗତ ସମ୍ପର୍କ ଥିଲା । ମୁଁ ତାଙ୍କୁ ମହାତ୍ମାଙ୍କ ଭଳି ସମ୍ମାନ ଦେଉଥିଲି । ସେ ଶିକ୍ଷା କ୍ଷେତ୍ରରେ ବହୁ ପରିବର୍ତ୍ତନ ଆଣିଥିଲେ । ଶିକ୍ଷକ ତାଲିମ୍ କେନ୍ଦ୍ରର ଶିକ୍ଷାଦାନ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଆଣିଥିଲେ । ସେ ଜଣେ ଉଚ୍ଚକୋଟୀର ଅଧ୍ୟାପକ, ପ୍ରଶାସକ ଓ ଲେଖକ ଭାବେ ଜନମାନସରେ ଆଦୃତି ଲାଭ କରିଥିଲେ । ତାଙ୍କ ଦ୍ୱାରା ରଚିତ ଅନେକ ପୁସ୍ତକ ଓ ଇଂରାଜୀ ଅଭିଧାନ ଅତି ଉଚ୍ଚକୋଟୀର ଅଟେ । ସେ ମହିମାଧର୍ମର ପୃଷ୍ଠପୋଷକ ଥିଲେ । ତାଙ୍କ ବିୟୋଗରେ ମୋତେ ଯେ କେବଳ ଦାରୁଣ ଆଘାତ ଲାଗିଛି ତାହା ନୁହେଁ, ସମଗ୍ର ରାଜ୍ୟର ଶିକ୍ଷା ଜଗତରେ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି ।' ମନ୍ତ୍ରୀ ଶ୍ରୀ ଘଡ଼ାଇ ସ୍ୱର୍ଗତ ନାଥଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସହ ତାଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜଣାଇଛନ୍ତି ।



# ସେ ଥିଲେ ଓଡ଼ିଶା ଶିକ୍ଷା ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର

**ଶ୍ରୀ ମନମୋହନ ସାମଲ**
**ମାନ୍ୟବର ରାଜସ୍ୱ, ଖାଦ୍ୟ ଓ ଖାଉଟି କଲ୍ୟାଣ ମନ୍ତ୍ରୀ**

ମହାଶୟ,

ଆପଣଙ୍କ ପିତୃବିୟୋଗର ସମ୍ବାଦ ପାଇଁ ମୁଁ ଅତ୍ୟନ୍ତ ମର୍ମାହତ । ସରକାରୀ ଗସ୍ତରେ ସ୍ଥାନାନ୍ତରେ ଥାଇ ପ୍ରଫେସର ନାଥଙ୍କୁ ଶେଷ ଦର୍ଶନ ନକରି ପାରି ମୁଁ ଦୁଃଖିତ । ପ୍ରଫେସର ଶତ୍ରୁଘ୍ନ ନାଥ ଓଡ଼ିଶା ଶିକ୍ଷା ଆକାଶରେ ଥିଲେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ତାଙ୍କର ଛାତ୍ରବତ୍ସଳତା, ପାଣ୍ଡିତ୍ୟ ଓ ମଣିଷପଣିଆ ଛାତ୍ର ଏବଂ ଅଭିଭାବକ ମହଲରେ ଅବିସ୍ମରଣୀୟ ହୋଇ ରହିବ । ଛାତ୍ର ଜୀବନରୁ ମେଧାବୀ ପ୍ରଫେସର ନାଥ ପରିଣତ ବୟସ ପର୍ଯ୍ୟନ୍ତ କର୍ମଚଞ୍ଚଳ ଓ ସାଧନାରତ ଥିଲେ । ବହୁ ଗ୍ରନ୍ଥର ରଚୟିତା ପ୍ରଫେସର ନାଥ ତାଙ୍କର ଅମର କୃତିଗୁଡ଼ିକ ପାଇଁ ଓଡ଼ିଆ ଗଦ୍ୟ ସାହିତ୍ୟ ଇତିହାସରେ ଯେ ଅମ୍ଳାନ ହୋଇ ରହିବେ ଏଥିରେ ସନ୍ଦେହ ନାହିଁ । ପ୍ରଫେସର ନାଥଙ୍କ ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମନ୍ତେ ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

# ଶିକ୍ଷା କ୍ଷେତ୍ରରେ ସେ ବ୍ୟାପକ ପରିବର୍ତ୍ତନ ଆଣିଥିଲେ

**ଶ୍ରୀ ଜୟନାରାୟଣ ମିଶ୍ର**
**ମାନ୍ୟବର ବାଣିଜ୍ୟ ଓ ପରିବହନ ମନ୍ତ୍ରୀ**

ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ବିୟୋଗରେ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଜୟ ନାରାୟଣ ମିଶ୍ର ଗଭୀର ଶୋକ ପ୍ରକାଶ କରିଛନ୍ତି । ମନ୍ତ୍ରୀ ଶ୍ରୀ ମିଶ୍ର ଏକ ଶୋକ ବାର୍ତ୍ତାରେ କହିଛନ୍ତି ଯେ, ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀ ଶତ୍ରୁଘ୍ନ ନାଥ ଏକାଧାରାରେ ଜଣେ ଅଧ୍ୟାପକ, ଲେଖକ ଛାତ୍ର ବତ୍ସଳ, ସରଳ, ମିଷ୍ଟଭାଷୀ ଓ ପରୋପକାରୀ ବ୍ୟକ୍ତି ଭାବରେ ପରିଚିତ ଥିଲେ । ଶିକ୍ଷାର ଉନ୍ନତି ପାଇଁ ସେ ବିଭିନ୍ନ ପୁସ୍ତକ ଓ ଇଂରାଜୀ ଅଭିଧାନ ରଚନା କରିଥିଲେ । ଶିକ୍ଷକ ତାଲିମ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଆଣିଥିଲେ । ସେ ଜଣେ ଆଦର୍ଶ ଶିକ୍ଷକ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସୁନାମ ଅର୍ଜନ କରିଥିଲେ । ତାଙ୍କ ବିୟୋଗରେ ରାଜ୍ୟ ଜଣେ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ହରାଇଲା । ମନ୍ତ୍ରୀ ଶ୍ରୀ ମିଶ୍ର ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସହ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜଣାଇଛନ୍ତି ।

# ଅଧ୍ୟାପନା କ୍ଷେତ୍ରରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି ହେଲା

**ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ**
**ମାନ୍ୟବର ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ**

ସ୍ୱନାମଧନ୍ୟ ବିଶିଷ୍ଟ ଶିକ୍ଷାବିତ୍ ଡଃ. ଶତ୍ରୁଘ୍ନ ନାଥଙ୍କ ବିୟୋଗର ଖବର ଶୁଣି ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ ବିଶେଷ ମର୍ମାହତ ଓ ଦୁଃଖିତ । ମନ୍ତ୍ରୀ ଶ୍ରୀ ପ୍ରଧାନ ଗଭୀର ଶୋକ ପ୍ରକାଶ କରି ଏକ ଶୋକବାର୍ତ୍ତାରେ କହିଛନ୍ତି ଯେ, ଗତ କାଲି ରାତି ଓଡ଼ିଶା ଶିକ୍ଷା ବିଭାଗ ଇତିହାସ ପାଇଁ ଏକ ଦୁଃଖଦ ସମୟ ଥିଲା । ଡଃ. ଶତ୍ରୁଘ୍ନ ନାଥଙ୍କର ୯୨ବର୍ଷ କର୍ମମୟ ଜୀବନର ଅବସାନ ଘଟିଲା । ଭଦ୍ରକର ଏକ ଗ୍ରାମାଞ୍ଚଳରେ ଜନ୍ମ ଗ୍ରହଣ କରି ଶିକ୍ଷା ବିଭାଗର ପ୍ରାଥମିକ ଓ ଉଚ୍ଚପ୍ରାଥମିକ ଶିକ୍ଷା ସ୍ତରରେ ବହୁ ପରିବର୍ତ୍ତନ ଆଣିଥିଲେ । ଶିକ୍ଷକ ତାଲିମ କ୍ଷେତ୍ରରେ ଅନେକ ଦିଗ୍‌ଦର୍ଶନ ଦେଇ ବ୍ୟାପକ ପରିବର୍ତ୍ତନ ଆଣିବାରେ ସକ୍ଷମ ହୋଇପାରିଥିଲେ । ସ୍ୱର୍ଗତ ନାଥଙ୍କୁ ଏକାଧାରାରେ ଜଣେ ଉଚ୍ଚକୋଟୀର ଅଧ୍ୟାପକ, ଲେଖକ, ପ୍ରଶାସକ ଓ ଛାତ୍ରବତ୍ସଳ ଭାବେ ଅଭିହିତ କରି ତାଙ୍କ ଜୀବନ କାଳ ମଧ୍ୟରେ ଅନେକ ପୁସ୍ତକ ଓ



ଅଭିଧାନ ରଚନା ଓ ଶିକ୍ଷା ଦାନକୁ ଗୁଣାତ୍ମକ କରିବା ଦିଗରେ ଜନ ମାନସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ ବୋଲି ମନ୍ତ୍ରୀ କହିଛନ୍ତି । ସେ ଜଣେ ସରଳ, ମିଷ୍ଟଭାଷୀ, ଅମାୟିକ, ନିଷ୍କପଟ ଓ ଦରଦୀ ମଣିଷ ଭାବରେ ସମାଜ ତଥା ଛାତ୍ରମାନଙ୍କ ମଧ୍ୟରେ ପରିଚିତ ଥିଲେ । ତାଙ୍କ ବିୟୋଗରେ ରାଜ୍ୟ ଜଣେ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ହରାଇବା ସହ ଅଧ୍ୟାପନା କ୍ଷେତ୍ରରେ ଏକ ବିରାଟ ଶୂନ୍ୟ ସ୍ଥାନ ସୃଷ୍ଟି କରିଛି ବୋଲି ମନ୍ତ୍ରୀ କହିଛନ୍ତି । ମନ୍ତ୍ରୀ ଶ୍ରୀ ପ୍ରଧାନ ତାଙ୍କର ଶୋକ ସନ୍ତପ୍ତ ପରିବାର ବର୍ଗଙ୍କ ପ୍ରତି ଗଭୀର ସମବେଦନା ଜଣାଇବା ସହ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିଛନ୍ତି ।

## ତାଙ୍କ ସ୍ମୃତି ଚିରସ୍ମରଣୀୟ ହୋଇ ରହିବ

**ଶ୍ରୀ ନରେନ୍ ପଲେଇ**
**ମାନ୍ୟବର ବିଧାୟକ, ଭଦ୍ରକ**

ଭଦ୍ରକର ସୁଯୋଗ୍ୟ ସନ୍ତାନ, ବିଶିଷ୍ଟ ଶିକ୍ଷାବିତ୍, ଶିକ୍ଷା ସଂସ୍କାରକ, ସୁଲେଖକ, ସୁବକ୍ତା, ଛତ୍ରବତ୍ସଳ, ସ୍ନେହୀ, ବିଭିନ୍ନ ଅନୁଷ୍ଠାନର ସ୍ରଷ୍ଟା ପ୍ରଫେସର ଶତ୍ରୁଘ୍ନ ନାଥ ଆମଠାରୁ ବିଦାୟ ନେଇଛନ୍ତି । ଭଦ୍ରକର ଶିକ୍ଷାପ୍ରେମୀ ବୁଦ୍ଧିଜୀବୀ, ତାଙ୍କ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତି ବିଶେଷ ଭାବେ ମର୍ମାହତ । ଭଦ୍ରକ ମାଟି ତାର ଜଣେ ଯୋଗ୍ୟ ପ୍ରତିଭାକୁ ହରେଇଛି । ତାଙ୍କର ସ୍ମୃତି ଚିରସ୍ମରଣୀୟ ହୋଇ ରହିବ । ତାଙ୍କର ଏକାଦଶାହରେ ଏକ ସ୍ମରଣିକା ପ୍ରକାଶ ପାଉଛି ଶୁଣି ଅତ୍ୟନ୍ତ ଆନନ୍ଦିତ । ଏହି ଅବସରରେ ତାଙ୍କର ପରିବାରବର୍ଗଙ୍କ ସୁଖକାମନା କରିବା ସହ ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ଭକ୍ତିପ୍ଳୁତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

## ଶୂନ୍ୟସ୍ଥାନ ପୂରଣ ହେବା ସମ୍ଭବ ନୁହେଁ

**ଶ୍ରୀ ବିକ୍ରମ କେଶରୀ ବର୍ମା**
**ମାନ୍ୟବର ବିଧାୟକ, ମାହାଙ୍ଗା**

ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ବିୟୋଗରେ ମାହାଙ୍ଗା ବିଧାୟକ ତଥା ୟୁ.ଟି.ଆ ଶିକ୍ଷକ ସଂଘର ରାଜ୍ୟ ସଭାପତି ଶ୍ରୀ ବିକ୍ରମ କେଶରୀ ବର୍ମା ଗଭୀର ଶୋକ ପ୍ରକାଶ କରିଛନ୍ତି ଯେ, ଡଃ. ନାଥଙ୍କ ବିୟୋଗରେ ଶିକ୍ଷା କ୍ଷେତ୍ରରେ ଯେଉଁ ସ୍ଥାନ ଶୂନ୍ୟ ହେଲା ତାହା ନିକଟ ଭବିଷ୍ୟତରେ ପୂରଣ ହେବା ସମ୍ଭବ ନୁହେଁ । ସେ ଏକାଧାରାରେ ଜଣେ ଶିକ୍ଷାବିତ୍, ସୁଲେଖକ, ଗାନ୍ଧିବାଦୀ ଜନସେବକ ଓ ଚିନ୍ତାନାୟକ ଥିଲେ ବୋଲି ଶ୍ରୀ ବର୍ମା କହିଛନ୍ତି ।

## ସମଗ୍ର ଓଡ଼ିଶା ଏକ ସ୍ୱନାମଧନ୍ୟ ବରପୁତ୍ରଙ୍କୁ ହରାଇଲା

**ଅଧ୍ୟକ୍ଷ, କର୍ମଚାରୀ ଏବଂ ଛାତ୍ରଛାତ୍ରୀ ବୃନ୍ଦ**
**ନବକୃଷ୍ଣ ଚୌଧୁରୀ ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ, ଅନୁଗୁଳ**

ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ମହାପ୍ରୟାଣରେ ଆମେ ମର୍ମାହତ । ସ୍ୱର୍ଗତ ନାଥ ଏହି ମହାବିଦ୍ୟାଳୟର ପ୍ରଥମ ଅଧ୍ୟକ୍ଷ ଥିଲେ । ଏହା ହିଁ ଥିଲା ତାଙ୍କର କର୍ମଭୂମି । ସେ ଗାନ୍ଧିଜୀଙ୍କର ମୌଳିକ ଶିକ୍ଷାର ପ୍ରକୃତ ପ୍ରୟୋଗ ଏହିଠାରେ କରିଥିଲେ । ତାଙ୍କ ଦେହାବସାନରେ ସମଗ୍ର ଓଡ଼ିଶା ତଥା ଏହି ମହାବିଦ୍ୟାଳୟ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଏବଂ ସ୍ୱନାମଧନ୍ୟ ବରପୁତ୍ରଙ୍କୁ ହରାଇଲା । ସ୍ୱର୍ଗତ ଆତ୍ମାର ସଦ୍‌ଗତି ନିମନ୍ତେ ଏହି ଦୁଃଖଦ ପରିବେଶରେ ଏହି ମହାବିଦ୍ୟାଳୟ ପ୍ରଫେସର ନାଥଙ୍କ ଶୋକସନ୍ତପ୍ତ ପରିବାର ପ୍ରତି ସମବେଦନା ଜ୍ଞାପନ କରେ ।



# ଅନୁଷ୍ଠାନର ଅପୂରଣୀୟ କ୍ଷତି ହୋଇଅଛି

ସୁରେନ୍ଦ୍ର ମୋହନ ପାଣି
ଅଧକ୍ଷ, ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ

ଛାତ୍ରଛାତ୍ରୀ, ଶିକ୍ଷକ ଓ କର୍ମଚାରୀବୃନ୍ଦ
ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ

ବିଶିଷ୍ଟ ଶିକ୍ଷାବିତ୍, ଏହି ଅନୁଷ୍ଠାନ (ରାଧାନାଥ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍‌ସଡ୍ ଷ୍ଟଡିଜ୍ ଇନ୍ ଏଜୁକେଶନ୍)ର ପୂର୍ବତନ ଅଧକ୍ଷ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଅକାଳ ବିୟୋଗରେ ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧାନ ପ୍ରତିଷ୍ଠାନ, କଟକର ସମସ୍ତ ଛାତ୍ରଛାତ୍ରୀ, ଶିକ୍ଷକ ଓ କର୍ମଚାରୀବୃନ୍ଦ ଗଭୀର ଭାବରେ ମର୍ମାହତ । ପ୍ରଫେସର ନାଥ ଜଣେ ଉଚ୍ଚକୋଟୀର ଶିକ୍ଷକ, ଗାନ୍ଧିବାଦୀ, ଛାତ୍ରବତ୍ସଳ, ମାନବଧର୍ମୀ, ସମ୍ବେଦନଶୀଳ ବ୍ୟକ୍ତିତ୍ୱ, ଲେଖକ, ଶିକ୍ଷା ପ୍ରଶାସକ, ପ୍ରବାଦ ପୁରୁଷ, ଉତ୍କଳ ରତ୍ନ ଓ ପ୍ରଜ୍ଞା ପୁରୁଷ ଭାବରେ ଏହି ଅନୁଷ୍ଠାନରେ ଜଣେ ହିତାକାଂକ୍ଷୀ ବ୍ୟକ୍ତି ଥିଲେ । ତାଙ୍କର ଅକାଳ ବିୟୋଗରେ ଏହି ଅନୁଷ୍ଠାନର ଅପୂରଣୀୟ କ୍ଷତି ହୋଇଅଛି । ପ୍ରଫେସର ନାଥଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଆମେ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁ । ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଏହି ଦାରୁଣ ଦୁଃଖ ସହ୍ୟ କରିବା ଲାଗି ଈଶ୍ୱର ଅସୀମ ଧୈର୍ଯ୍ୟ ଓ ଶକ୍ତି ପ୍ରଦାନ କରନ୍ତୁ, ଏହା ହିଁ ଆମର ପ୍ରାର୍ଥନା ।

# ସେ ଥିଲେ ଜଣେ ଗାନ୍ଧିବାଦୀ, ଛାତ୍ରବତ୍ସଳ, ସମ୍ବେଦନଶୀଳ ବ୍ୟକ୍ତିତ୍ୱ

ସଂପାଦକ, ପୁରାତନ ଛାତ୍ର ସଂସଦ
ରାଧାନାଥ ଉଚ୍ଚତର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ, କଟକ

ବିଶିଷ୍ଟ ଶିକ୍ଷାବିତ୍, ଏହି ଅନୁଷ୍ଠାନ (ରାଧାନାଥ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍‌ସଡ୍ ଷ୍ଟଡିଜ୍ ଇନ୍ ଏଜୁକେଶନ୍)ର ପୂର୍ବତନ ଅଧକ୍ଷ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଅକାଳ ବିୟୋଗରେ ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧାନ ପ୍ରତିଷ୍ଠାନ, କଟକର ସମସ୍ତ ଛାତ୍ରଛାତ୍ରୀ, ଶିକ୍ଷକ ଓ କର୍ମଚାରୀବୃନ୍ଦ ଗଭୀର ଭାବରେ ମର୍ମାହତ । ପ୍ରଫେସର ନାଥ ଜଣେ ଉଚ୍ଚକୋଟୀର ଶିକ୍ଷକ, ଗାନ୍ଧିବାଦୀ, ଛାତ୍ରବତ୍ସଳ, ମାନବଧର୍ମୀ, ସମ୍ବେଦନଶୀଳ ବ୍ୟକ୍ତିତ୍ୱ, ଲେଖକ, ଶିକ୍ଷା ପ୍ରଶାସକ, ପ୍ରବାଦ ପୁରୁଷ, ଉତ୍କଳ ରତ୍ନ ଓ ପ୍ରଜ୍ଞା ପୁରୁଷ ଭାବରେ ଏହି ଅନୁଷ୍ଠାନର ଜଣେ ହିତାକାଂକ୍ଷୀ ବ୍ୟକ୍ତି ଥିଲେ । ତାଙ୍କର ଅକାଳ ବିୟୋଗରେ ଏହି ଅନୁଷ୍ଠାନର ଅପୂରଣୀୟ କ୍ଷତି ହୋଇଅଛି । ପ୍ରଫେସର ନାଥଙ୍କ ଅମର ଆତ୍ମାର ସଦଗତି ନିମନ୍ତେ ଆମେ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁ । ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଏହି ଦାରୁଣ ଦୁଃଖ ସହ୍ୟ କରିବା ଲାଗି ଈଶ୍ୱର ଅସୀମ ଧୈର୍ଯ୍ୟ ଓ ଶକ୍ତି ପ୍ରଦାନ କରନ୍ତୁ, ଏହା ହିଁ ଆମର ପ୍ରାର୍ଥନା ।

# His demise is a great loss to the state

**PRINCIPAL**
**Nalini Devi Women's College of Teacher Education**
**Unit-III, Kharavel Nagar, Bhubaneswar - 751001**

The members of staff and students of Nalini Devi Women's College of Teacher Education, Bhubaneswar deeply grieve the sad demise of Prof. Satrughna Nath, a legendary in the faculty of Education. His demise is a great loss to the State. May his noble soul rest in peace. In this juncture we pray to the almighty to give strength to the members of his bereaved family to bear this irreparable loss.



## ଶିକ୍ଷା ବିଭାଗକୁ ତାଙ୍କର ବଳିଷ୍ଠ ଦାନ ଅତୁଳନୀୟ

ସେବକ ତ୍ରିପାଠୀ
**ନିର୍ଦ୍ଦେଶକ, ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ**
**ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା, ଭୁବନେଶ୍ୱର**

ଆମ୍ଭେ ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ପରିଷଦ, ଓଡ଼ିଶା, ଭୁବନେଶ୍ୱରର ସମସ୍ତ କର୍ମଚାରୀ, ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍, ଗାନ୍ଧୀବାଦୀ ଜନନାୟକ, ପ୍ରଶାସକ ତଥା ସାହିତ୍ୟିକ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଅକାଳ ବିୟୋଗରେ ଗଭୀର ମର୍ମାହତ । ସେ ଗତ କାଲି ତା. ୧୦.୩.୨୦୦୬ ରିଖ ରାତିରେ ଆମ୍ଭମାନଙ୍କୁ ଶୋକ ସାଗରରେ ଭସାଇ ଇହଧାମ ତ୍ୟାଗ କଲେ । ଏ ଅନୁଷ୍ଠାନର ସେ ଥିଲେ ପ୍ରଥମ ପ୍ରାଣ ପ୍ରତିଷ୍ଠାତା ଏବଂ ଅଧ୍ୟକ୍ଷ । ସମଗ୍ର ଶିକ୍ଷା ବିଭାଗକୁ ତାଙ୍କର ବଳିଷ୍ଠ ଦାନ ଅତୁଳନୀୟ । ବିଶେଷ କରି ମୌଳିକ ଶିକ୍ଷା ଓ ଶିକ୍ଷକ ଶିକ୍ଷାର ବାସ୍ତବ ରୂପରେଖ ଓ ଉନ୍ନତି ତାଙ୍କ ଦ୍ୱାରା ହିଁ ଆମ ରାଜ୍ୟରେ ସମ୍ଭବ ହୋଇ ପାରିଥିଲା । ରାଜ୍ୟ ସରକାରଙ୍କର ବିଭିନ୍ନ ଶିକ୍ଷା କମିଟିରେ ସଦସ୍ୟ ଓ ବିଶେଷଜ୍ଞ ଭାବରେ ବହୁମୂଲ୍ୟ ପରାମର୍ଶ ଦେଇ ବିଦ୍ୟାଳୟ ଶିକ୍ଷା ତଥା ଶିକ୍ଷକ ଶିକ୍ଷାର ସଂସ୍କାର ପ୍ରକ୍ରିୟାରେ ସେ ଯଥେଷ୍ଟ ପରିବର୍ତ୍ତନ ଆଣିବାରେ ଆଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ବିଦେଶ ଯାତ୍ରା କରି ମୌଳିକ ଶିକ୍ଷାର ତାତ୍ତ୍ୱିକ ନିର୍ଯ୍ୟାସକୁ ସେ ପ୍ରାଂଜଳ ଭାବରେ ପ୍ରସାର କରିବାରେ ସକ୍ଷମ ହୋଇ ପାରିଥିଲେ । ଆଜୀବନ ସରଳ, ନିଷ୍କପଟ ତଥା ସେବା ମନୋବୃତ୍ତି ନେଇ ଗାନ୍ଧୀବାଦର ମୂଲ୍ୟବୋଧ ଭିତରେ ସେ ଜୀଇଁ ଥିଲେ । ତାଙ୍କର ଆଧ୍ୟାତ୍ମିକ ଚେତନା ଓ ସାଧନା ମହିମା ଧର୍ମ ଦ୍ୱାରା ସଂପୂର୍ଣ୍ଣ ଭାବରେ ଉତ୍କର୍ଷ ଲାଭ କରିଥିଲା । ତାଙ୍କର ଆକସ୍ମିକ ବିୟୋଗରେ ଆମ ରାଜ୍ୟ, ସମଗ୍ର ଦେଶ ଜଣେ ଅଦ୍ୱିତୀୟ ପ୍ରତିଭାବାନ୍ ଶିକ୍ଷାବିତ୍‌କୁ ହରାଇଲା । ସବୁଦିନ ପାଇଁ ତାଙ୍କ ସ୍ଥାନ ଅପୂରଣୀୟ ରହିବ । ଏହି ଅବସରରେ ଆମେ ସମସ୍ତେ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରିବା ସହିତ ଏ ପ୍ରକାର ଅସହଣୀୟ ଦୁଃଖକୁ ତାଙ୍କ ପରିବାର ଧୈର୍ଯ୍ୟର ସହିତ ସହିବାକୁ ଭଗବାନ ସେମାନଙ୍କୁ ଅସୀମ ସାହସ ଦିଅନ୍ତୁ, ଏହା ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

## ସବୁ ମଣିଷଙ୍କ ମଧ୍ୟରେ ସେ ଥିଲେ ଜଣେ ଭିନ୍ନକୋଟୀର ମଣିଷ

**ବ୍ରହ୍ମାବଧୂତ ଜୟକୃଷ୍ଣ ବାବା**
**ସତ୍ୟ ମହିମାଶ୍ରମ, ଖଣ୍ଡଗିରି, ଭୁବନେଶ୍ୱର**

ଭକ୍ତ ଶତ୍ରୁଘ୍ନ ନାଥଙ୍କ ଆକସ୍ମିକ ବିୟୋଗ ସମଗ୍ର ଦେଶବାସୀଙ୍କ ପାଇଁ କେବଳ ଶକ୍ତ ଧକ୍କା ନୁହେଁ, ମହିମା ଧର୍ମ ଧାମ ସମାଜ ପାଇଁ ମଧ ଏକ ଅପୂରଣୀୟ କ୍ଷତି । ମହିମା ଧର୍ମର ବିଶ୍ୱବ୍ୟାପୀ ପ୍ରଚାର ପ୍ରସାର ନିମିତ୍ତ ବାବୁଙ୍କ ବିଚାର ବିମର୍ଶ ଓ ଅବଦାନ ଅତି ଅତୁଳନୀୟ । ପରମପୂଜ୍ୟ ଗୁରୁ ବିଶ୍ୱନାଥ ବାବାଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସେ ମହିମା ଧର୍ମ ପାଇଁ ଅନେକ ଉପାଦେୟ ପୁସ୍ତକ ରଚନା କରି ଯାଇଛନ୍ତି । ସେଥି ମଧ୍ୟରୁ କେତେଖଣ୍ଡ ପୁସ୍ତକ ଖଣ୍ଡିଗିରି ମହିମାଶ୍ରମ ବାବା ଜୟକୃଷ୍ଣ ପାଠାଗାର ଆନୁକୂଲ୍ୟରେ ପ୍ରକାଶିତ, ଉନ୍ମୋଚିତ ତଥା ବାବୁଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ସବୁ ମଣିଷଙ୍କ ମଧ୍ୟରେ ସେ ଥିଲେ ଜଣେ ଭିନ୍ନକୋଟୀର ମଣିଷ, ଚିନ୍ତା ଚେତନା, କଥା ଓ କାମର ଏକ ଅନନ୍ୟ ଚେତ ବିରଳ ବ୍ୟକ୍ତିତ୍ୱ । ସେ ବହୁବାର ଖଣ୍ଡଗିରି ଆଶ୍ରମକୁ ଆସନ୍ତି, ଭକ୍ତ ଓ ଭକ୍ତ ମା'ମାନଙ୍କ ସହିତ ଅତି ଘନିଷ୍ଠ, ଅତି ଆପଣାର ପ୍ରିୟଜନ ପରି ମିଠାମିଠା କଥାରେ ସେମାନଙ୍କ ମନକୁ ଆପ୍ୟାୟିତ କରିଥାନ୍ତି । ଆଜି ସେ କର୍ମଯୋଗୀ ସାଧକଙ୍କ କର୍ମମୟ ଜୀବନର ଅବସାନ ଘଟିଛି । ସେହି ପ୍ରବାଦ ପୁରୁଷଙ୍କ ଜ୍ଞାନ, ଭକ୍ତି, ତ୍ୟାଗ ନିଷ୍ଠା, ସେବା ଧର୍ମ ସମସ୍ତଙ୍କ ଜୀବନରେ ଆଦର୍ଶ ହୋଇ ରହୁ ଓ ସେହି ଅମର ଆତ୍ମା ସଦ୍‌ଗତି ଲାଭ କରୁ ଏହା ଆମର ମହିମା ଅଲେଖ ପ୍ରଭୁଙ୍କ ଅଭୟ ପାଦରେ ଅନ୍ତିମ ନିବେଦନ ।



# ମୌଳବାଦୀ ସାହିତ୍ୟ ସୃଷ୍ଟି ଯୁଗର ଅବସାନ ଘଟିଲା

**ଫକୀର ହରିଚନ୍ଦନ**

ଶ୍ରଦ୍ଧେୟ ଡାକ୍ତର ରବିବାବୁ,

ଆପଣଙ୍କ ପିତା ଓଡ଼ିଶାର ଲବ୍ଧପ୍ରତିଷ୍ଠ ଶିକ୍ଷାବିତ୍, ବିଶିଷ୍ଟ ମୌଳବାଦୀ ଲେଖକ ଓ ସାହିତ୍ୟ ସାଧକ ପ୍ରଫେସର ଶତ୍ରୁଘ୍ନ ନାଥଙ୍କର ବିୟୋଗ ନିଷ୍ଚିତଭାବେ ସମଗ୍ର ଓଡ଼ିଶାର ଶିକ୍ଷକ, ଶିକ୍ଷାବିତ୍ ଓ ସାହିତ୍ୟ ପ୍ରେମୀମାନଙ୍କ ପାଇଁ ଏକ ଦାରୁଣ ଦୁଃଖଦାୟକ ଘଟଣା । ସେ ଥିଲେ ଉତ୍କଳର ସାରସ୍ୱତ ଆକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ସଦୃଶ । ତାଙ୍କ ବିୟୋଗରେ ଓଡ଼ିଶାର ସାରସ୍ୱତ ସାଧନା କ୍ଷେତ୍ରରେ ଏକ ମୌଳବାଦୀ ସାହିତ୍ୟ ସୃଷ୍ଟି ଯୁଗର ଅବସାନ ଘଟିଲା ।

କିନ୍ତୁ ବ୍ୟକ୍ତିଗତ ଭାବେ ମୋ ପାଇଁ ଓ ମୋର ପରିବାର ପାଇଁ ଆପଣଙ୍କ ପିତାଙ୍କ ବିୟୋଗ ବାର୍ତ୍ତା ଅତ୍ୟନ୍ତ ଦୁଃଖ ଦାୟକ । ସେ ଥିଲେ ମୋ ପରିବାରର ମୁରବୀ ସଦୃଶ । ମୋର ଜଣେ ହିତାକାଂକ୍ଷୀ ବନ୍ଧୁ । ମୋର ପୁଅ, ଝିଅମାନଙ୍କୁ ସେ ନିଜର ପୁଅଝିଅ ଭଳି ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ତାଙ୍କର ଧୀର ସ୍ଥିର ନମ୍ର ଓ ମଧୁର ଭାଷାରେ ହିଁ ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱ ପ୍ରତିଫଳିତ ହେଉଥିଲା । ୧୯୮୦-୮୧ରେ ସେ ବୋଲଗଡ଼ ପରମାନନ୍ଦ କଲେଜ ଅଫ୍ ଏଡୁକେଶନ୍‌ରେ ଅଧକ୍ଷ ଥିଲାବେଳେ ମୋର ଝିଅ ରତ୍ନରେଣୁ ସେହି କଲେଜର ଅଧ୍ୟାପିକା ଥିଲା । ରତ୍ନରେଣୁକୁ ସେ ଜଣେ ତଳିଆ ସହକର୍ମୀ ଭାବେ ନଦେଖି ନିଜର ଝିଅଭାବେ ଅତ୍ୟନ୍ତ ସ୍ନେହ କରୁଥିଲେ । ୧୯୮୧ ମସିହା ସେପ୍ଟେମ୍ବର ମାସ ୧ ତାରିଖରେ ରତ୍ନରେଣୁର ଅକାଳ ମୃତ୍ୟୁରେ ପ୍ରଫେସର ନାଥ ମୋ ପ୍ରତି ସମବେଦନା ଜଣାଇ ଯେପରି କାନ୍ଦି ପକାଇଥିଲେ, ତାହା ମୋର ମନେ ଅଛି । ୧୯୮୯ ମସିହା ଜାନୁଆରୀ ୨ ତାରିଖରେ ମୁଁ ହଳଦିଆପଡ଼ା ସ୍ୱେଚ୍ଛାସେବୀ ସଂଗଠନ ବିଦ୍ୟୁତ୍ କ୍ଲବ୍‌ର ସଭାପତି ଥିବା ସମୟରେ ସେହି ଅନୁଷ୍ଠାନର ଜନଶିକ୍ଷା ଅଭିଯାନ କାର୍ଯ୍ୟକ୍ରମରେ ପ୍ରଫେସର ଶତ୍ରୁଘ୍ନ ନାଥ, ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ, ଡକ୍ଟର ଅରବିନ୍ଦ ପଟ୍ଟନାୟକ ପ୍ରଭୃତିଙ୍କୁ ଡାକି ବିଦ୍ୟୁତ୍ କ୍ଲବ୍ ପରିସରରେ ସେହି ଅନୁଷ୍ଠାନର ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କର ଏକ ଅବକ୍ଷ ପ୍ରତିମୂର୍ତ୍ତିକୁ ପ୍ରଫେସର ନାଥଙ୍କ ଦ୍ୱାରା ଉନ୍ମୋଚିତ କରାଇ ଥିଲି ।

ସେଠାରେ ମଧ ପ୍ରଫେସର ନାଥ ତାଙ୍କ ଭାଷଣରେ ମୋ ଝିଅ ରତ୍ନରେଣୁର ଅକାଳ ବିୟୋଗ କଥା ମନେ ପକାଇ ମୁଁ ନିର୍ମାଣ କରିଥିବା ଏକ ବିରାଟ ମନ୍ଦିର ଅକାଳରେ ଭୁଷୁଡ଼ି ପଡ଼ିଲା ବୋଲି କହିଥିବା ବେଳେ ମୁଁ ଆଖିରୁ ଲୁହ ଗଡ଼ାଇ ପୋଛୁଥିଲି । ତାପରେ ବହୁବାର ତାଙ୍କ ସହିତ ମୋର ଦେଖା-ସାକ୍ଷାତ, ଆଳାପ-ଆଲୋଚନାର ସୁଯୋଗ ମୋତେ ମିଳିଥିଲା । ଆଜି ତାଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ଏବଂ ଆପଣ ଓ ଆପଣଙ୍କ ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ସମବେଦନା ଜଣାଇ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ପିତୃ ବିୟୋଗ ଜନିତ ଦାରୁଣ ଦୁଃଖ ସହିବାକୁ ପ୍ରଭୁ ଆପଣଙ୍କୁ ଶକ୍ତି ଓ ସାହସ ପ୍ରଦାନ କରନ୍ତୁ ।

## ଶିକ୍ଷା ଜଗତର ଦେଦୀପ୍ୟମାନ ସୂର୍ଯ୍ୟ

ଉତ୍କଳ-ରତ୍ନ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଦେହାନ୍ତ ଆମ ସମସ୍ତଙ୍କୁ ସ୍ତମ୍ଭୀଭୂତ କରି ଦେଇଛି । ବିଶ୍ୱାସ ହେଉନି ଯେ ସେ ଆମ ଗହଣରେ ନାହାନ୍ତି । ତାଙ୍କର କୋମଳ ସ୍ଥିର କଥା, ଅମାୟିକ ସ୍ନେହ, ସରଳ ବ୍ୟବହାର ଗୋଟିଏ ରଜ୍ଜୁରେ ଆମ ସମସ୍ତଙ୍କୁ ଏକାଠି କରିପାରିଥିଲା । ଜଣେ ମହାନ ମହାପୁରୁଷଙ୍କର ବିଚ୍ଛେଦ ତଥା ଶିକ୍ଷା ଜଗତର ଦେଦୀପ୍ୟମାନ ସୂର୍ଯ୍ୟଙ୍କର ଅସ୍ତମିତ ହୋଇଗଲା । ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛୁ ।

**ପ୍ରଫୁଲ୍ଲ ତ୍ରିପାଠୀ**
**ସମ୍ପାଦକ, ଭଦ୍ରକ ସମ୍ମିଳନୀ**



# ତାଙ୍କର ଗୁଣାବଳୀର ପଟ୍ଟାନ୍ତର ନାହିଁ

ବଂଶୀଧର ଭୋଇ
ଉପସଭାପତି, ଭଦ୍ରକ ସମ୍ମିଳନୀ, ଭୁବନେଶ୍ୱର

ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ
ତସ୍ମାଦପରି ହାର୍ଯେଽର୍ଥ ନଂତ୍ୱଂ ଶୋଚିତୁ ମର୍ହସି ।୨୭।

ଜନ୍ମ ଚିରନ୍ତନ ସତ୍ୟ, ମୃତ୍ୟୁ ଚିରନ୍ତନ ସତ୍ୟ । ଏଥିପାଇଁ ଦୁଃଖର କାରଣ ନାହିଁ । କିନ୍ତୁ ଦୁଃଖ କରିଥାଉ ସେମାନଙ୍କ ଜୀବନ କାଳ ମଧ୍ୟରେ ପ୍ରାଣୀର ସୁକୀର୍ତ୍ତିକୁ ସ୍ମରଣ କରି । ଉତ୍କଳ ରତ୍ନ ପ୍ରଫେସର ଶତ୍ରୁଘ୍ନ ନାଥ ଏକାଧାରାରେ କବି, ଲେଖକ, ସମାଜସେବୀ, ସଂସ୍କାରକ ତଥା ଶିକ୍ଷା ଜଗତର ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ । ତାଙ୍କର ଗୁଣାବଳୀର ପଟ୍ଟାନ୍ତର ନାହିଁ । ଅନ୍ୟର ଦୁଃଖ ଦେଖିଲେ ତାଙ୍କ ହୃଦୟ ଦୁଃଖରେ ଥରି ଉଠୁଥିଲା । ସେମାନଙ୍କ ଦୁଃଖରେ ନିଜକୁ ହଜାଇ ଦେଇ କବି ଭୀମ ଭୋଇଙ୍କ କବିତାକୁ ମର୍ମେ ମର୍ମେ ଅନୁଭବ କରୁଥିଲେ- "ପ୍ରାଣୀଙ୍କ କଷଣ ଭେଦ ଅଛି ମନ ଜୀବନକୁ ମୋର ବାଧେ' । ତାଙ୍କର ମହାପ୍ରୟାଣରେ ଉତ୍କଳ ଜନନୀ ତାର ଜଣେ ବରପୁତ୍ରକୁ ହରାଇଲା, ଏହା ନିଃସନ୍ଦେହ । ଭଦ୍ରକ ସମ୍ମିଳନୀ ତାଙ୍କର ବିୟୋଗରେ ଗଭୀର ଦୁଃଖ ପ୍ରକାଶ କରି ତାଙ୍କର ସଦ୍‌ଗତି କାମନା କରୁଛି ।

# ସେ ଥିଲେ ଅଜାତଶତ୍ରୁ

ସନାତନ ମହାନ୍ତି, ଭଦ୍ରକ

ଶ୍ରଦ୍ଧେୟ ଡକ୍ଟର ରବୀନ୍ଦ୍ର କୁମାର ନାଥ,

ଆପଣଙ୍କ ପରମ ପୂଜନୀୟ ପିତା ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଦେହାବସାନ ସମ୍ବାଦରେ ମୁଁ ଗଭୀର ଭାବେ ମର୍ମାହତ । ପ୍ରଫେସର ନାଥ ଅଳ୍ପ କିଛି କାଳ ଭଦ୍ରକ କଲେଜର ଅଧ୍ୟକ୍ଷ ଥିଲାବେଳେ ମୁଁ ତାଙ୍କୁ ଖୁବ୍ ନିକଟରୁ ଦେଖିବାର ସୁଯୋଗ ପାଇଥିଲି । ପରିଚାଳନା ଗତ ବିଶୃଙ୍ଖଳା ହେତୁ ସେତେବେଳେ କଲେଜ ସଙ୍କଟଜନକ ପରିସ୍ଥିତି ଭିତରେ ଗତିକରୁଥିଲା । ତାଙ୍କ ହୃଦୟର ବିଶାଳତା ଓ ବ୍ୟକ୍ତିତ୍ୱର କାଉଁରୀ ସ୍ପର୍ଶରେ ପରିସ୍ଥିତି କ୍ରମେ ସ୍ୱାଭାବିକ ହେବାରେ ଲାଗିଲା ।

ତାଙ୍କ ନିରାଡ଼ମ୍ବର ଜୀବନ ଶୈଳୀ ଓ ଅମାୟିକ ବ୍ୟବହାର ହେତୁ ସେ ଥିଲେ ଅଜାତଶତ୍ରୁ । ନିଜ ଆଚରଣ ମାଧ୍ୟମରେ ସାରା ଜୀବନ ସମାଜକୁ ଉଚିତ ମାର୍ଗ ଦର୍ଶନ ଦ୍ୱାରା ସେ ଆଦର୍ଶ ଗୁରୁର ଭୂମିକା ନିର୍ବାହ କରିଛନ୍ତି । ତାଙ୍କ ମହାପ୍ରୟାଣ କେବଳ ଭଦ୍ରକ ନୁହେଁ, ସାରା ଓଡ଼ିଶାରେ ଏକ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟିକଲା ।

ଆପଣଙ୍କର ଏହି ଦୁଃସମୟରେ ସମବେଦନା ଜଣାଇବା ସହିତ ମୋର ଗୁରୁପ୍ରତିମ ପ୍ରଫେସର ନାଥଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ଭକ୍ତି ଅର୍ଘ୍ୟ ଅର୍ପଣ କରୁଛି ।



# ଏଭଳି ମାନବ ଦୁର୍ଲଭ

ସାଧୁ ଅନାମ ଚରଣ ଦାସ

ମଣିଷପରି ମଣିଷଟିଏ । ଏଭଳି ବ୍ୟକ୍ତି କୋଟିକରେ ଗୋଟିଏ ମିଳନ୍ତି । ସମାଜରେ ବର୍ତ୍ତମାନ, ବହୁ ଶିକ୍ଷକ, ଶିକ୍ଷାବିତ୍‌ମାନେ ଅଛନ୍ତି । ତାଙ୍କ ଭିଡ଼ ମଧ୍ୟରୁ ଶତ୍ରୁଘ୍ନ ନାଥଙ୍କ ତ୍ୟାଗ, ନିରାଡ଼ମ୍ବର, ଧୀର, ସ୍ଥିର ସରଳ ଜୀବନ ଯାପନ ପ୍ରଣାଳୀ ଓ ଆଧ୍ୟାତ୍ମିକ ଚେତନା ଅଲଗାପରି ମନେ ହୁଏ । ଏଭଳି ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱକୁ ଲେଖନି ଦ୍ୱାରା ଚିତ୍ରଣ କରିବା ସମ୍ଭବ ନୁହେଁ । ଶତ୍ରୁଘ୍ନ ନାଥ ଜଣେ ଗାର୍ହସ୍ଥ୍ୟ ହେଲେ ମଧ, ସେ ଜଣେ କର୍ମଯୋଗୀ, ସନ୍ଥ ସ୍ୱଭାବ, ତଥା ଋଷି ପ୍ରତିମ ବ୍ୟକ୍ତି । ଓଡ଼ିଶା ଏବଂ ଭାରତବର୍ଷର ଜଣେ ବରିଷ୍ଠ ଶିକ୍ଷାବିତ୍ ତଥା ସଂସ୍କାରକ ଭାବେ ତାଙ୍କର ଅତୁଳନୀୟ ଅବଦାନକୁ କୌଣସି ଶିକ୍ଷିତ ସମାଜ ଅସ୍ୱୀକାର କରିପାରିବ ନାହିଁ । ଅଧୂନା ଶିକ୍ଷାର ଅଧୋଗତି, ପ୍ରୀୟାପ୍ରୀତି, ଜାଲିଆତି, ଶୋଷଣର ବହୁ ଉର୍ଦ୍ଧ୍ୱରେ ସେ ଥିଲେ । ବିଦେଶରେ ଯାଇ ଉଚ୍ଚଶିକ୍ଷା ଲାଭ କରିଥିଲେ ମଧ ତାଙ୍କୁ କୌଣସି ପ୍ରକାର ଝକଚକ୍ୟ ଆଡ଼ମ୍ବରପୂର୍ଣ୍ଣ ଭୋଗ ପ୍ରାଚୁର୍ଯ୍ୟ ତାଙ୍କୁ ବାନ୍ଧି ପାରି ନଥିଲା । ଯାହାସବୁ ନୀତି ଶାସ୍ତ୍ରମାନଙ୍କରେ କୁହାଯାଇଛି- ବିଦ୍ୟା ଦଦାତି ବିନୟଂ, ନମ୍ରନ୍ତି ଫଳିନୋବୃକ୍ଷାଃ, ନମ୍ରନ୍ତି ଗୁଣିନୋ ଜନାଃ । ଏହି ବିନୟ, ନମ୍ରତା କୋମଳଭାଷୀ ସମସ୍ତ ପ୍ରକାର ଗୁଣର ସେ ଅଧିକାରୀ ଥିଲେ । କେବଳ ବହୁତ ଗୁଡ଼ିଏ ଡିଗ୍ରୀ ହାସଲ କରିପାରିଲେ କେହି ବିଦ୍ୱାନ ହୋଇପାରେ ନାହିଁ । ଯଃ କ୍ରିୟାବାନ୍ ପୁରୁଷଃ ସଃ ବିଦ୍ୱାନଃ । ବାସ୍ତବରେ ସେ ଜଣେ କ୍ରିୟାବାନ୍ ଆଚାର ସମ୍ପନ୍ନ ବିଦ୍ୱାନ ଥିଲେ । ଧର୍ମକୁ ସେ ମାନବ ସମାଜ କଲ୍ୟାଣର ହେତୁ ରୂପେ ବୁଝିଥିଲେ । ତାଙ୍କ ମହାନ୍ ବିଚାର ଚିନ୍ତାଧାରାରେ ଧର୍ମ କରିଲେ, ଅନନ୍ତ, ଅସୀମ, ସ୍ୱୟଂ ପରଂବ୍ରହ୍ମ, ଯେ କି ଘଟେଘଟେ ସମସ୍ତ ପ୍ରାଣୀମାନଙ୍କଠାରେ ବିଦ୍ୟମାନ ଅଛନ୍ତି । ତାଙ୍କୁ କୌଣସି ସଂକୀର୍ଣ୍ଣ ସାମ୍ପ୍ରଦାୟିକ ମତବାଦ ସ୍ପର୍ଶ କରିନଥିଲା । ମହିମାଧର୍ମର ଉପାସକମାନେ ଏହି ବ୍ରହ୍ମୋପାସନା ତଥା ମହିମା ମାର୍ଗଟିକୁ ସେ ଜୀବନ ମୁକ୍ତିର ପଥ ବୋଲି ବାଛି ନେଇଥିଲେ । ଯେଉଁ ମହିମାକୁ କଳି ହୁଏ ନାହିଁ କି ମାପି ହୁଏ ନାହିଁ, ଅର୍ଥାତ୍ ଅନୁଭବ କରିହୁଏ, ତାହା ହିଁ ଅଲେଖ, ଅନନ୍ତ, ଅସୀମ 'ଭୂମା' । ଉପନିଷଦ କୁହେ 'ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ', ପରମପଦ ପ୍ରାପ୍ତି ପାଇଁ ବ୍ରହ୍ମୋପାସନା ବ୍ୟତୀତ ଅନ୍ୟ ଦୁସରା ମାର୍ଗ ନାହିଁ । ଏହା କୌଣସି ନିର୍ଦ୍ଦିଷ୍ଟ ସଂକୀର୍ଣ୍ଣ ଚିନ୍ତାଧାରା ଦ୍ୱାର ଉପଲବ୍ଧ ନୁହେଁ । ଶ୍ରୀଯୁକ୍ତ ନାଥ, ବେଦାନ୍ତର ଯାହା ନିର୍ଯାସ ତାହାକୁ ଯଥାର୍ଥ ଭାବରେ ହୃଦ୍‌ବୋଧ ହୋଇଥିଲେ । ଏଣୁ ସେ ମହିମା ଧର୍ମକୁ ନିଜ ବ୍ୟକ୍ତିଗତ ଆଚରଣରେ ଧର୍ମ ବୋଲି ଗ୍ରହଣ କରିନେଇଥିଲେ ।

ବିଶେଷ କରି ବ୍ରହ୍ମନିଷ୍ଠ, ବ୍ରହ୍ମସାଧକ ପୂଜ୍ୟ ବିଶ୍ୱନାଥ ବାବା ମହୋଦୟଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ପୂଜ୍ୟ ବାବା ମହୋଦୟଙ୍କୁ ସେ ଗୁରୁ ରୂପେ ଗ୍ରହଣ କରିଥିଲେ । ବାବା ମହୋଦୟଙ୍କ ମହିମା ଧର୍ମକୁ ପ୍ରଚାର ପ୍ରସାର ସମୟରେ ବହୁ ସଭା ସମିତିରେ ସେ ଯୋଗଦାନ କରି ମହିମା ସାହିତ୍ୟକୁ ଗୌରବାନ୍ୱିତ କରିଛନ୍ତି । ଶ୍ରୀଯୁକ୍ତ ନାଥଙ୍କର ମହିମା ସାହିତ୍ୟକୁ ଯେଉଁ ଅତୁଳନୀୟ ଅବଦାନ ରହିଛି, ତାହା ମହିମା ଧର୍ମ ସମାଜ ପାଇଁ ଚିର ଅବିସ୍ମରଣୀୟ ହୋଇ ରହିଛି ଏବଂ ରହିବ । ସେ ମହିମାଧର୍ମୀ ଭକ୍ତମାନଙ୍କ ମଧ୍ୟରେ ଥିଲେ ଭକ୍ତ ଶିରୋମଣି । ଧର୍ମ ସମାଜରେ କୌଣସି ସଙ୍କଟ ଦେଖାଦେଲେ ଆମ୍ଭେ ତାଙ୍କ ସମୀପକୁ ଧାଇଁ ଯାଉଁ । ତାଙ୍କ ସୁପରାମର୍ଶ ଆମ୍ଭ ସମସ୍ତଙ୍କର କାମ୍ୟ ହୁଏ । ସବୁ ସମୟରେ ସାଧୁ, ସନ୍ଥମାନେ ଗୃହରେ ଉପସ୍ଥିତ ହେଲେ ତାଙ୍କ (ଭିକ୍ଷା) ଅର୍ଥାତ୍ ଖାଦ୍ୟପେୟ, ସେବା ଶୁଶ୍ରୁଷା ପାଇଁ ବହୁ ଗୁରୁତ୍ୱ ଦିଅନ୍ତି । ସାଧୁ, ସନ୍ୟାସୀମାନେ ଭିକ୍ଷା ଗ୍ରହଣ କଲେ, ନିଜେ ବିନା ଦ୍ୱିଧାରେ ଉଚ୍ଛିଷ୍ଟ ପତ୍ର ଉଠାଇ ଦେବା ପାଇଁ ପ୍ରସ୍ତୁତି ହୋଇପଡ଼ନ୍ତି । ସେ ଜଣେ ଏତେବଡ଼ ଜ୍ଞାନୀ, ଗୁଣି ହେଲେ ମଧ, ତାଙ୍କ ମନରେ ଟିକେ ଦମ୍ଭୋକ୍ତି ଅହଂ ଭାବ ଦେଖାଯାଏ ନାହିଁ । କି ତ୍ୟାଗପୂତ ନିରାଡ଼ମ୍ବର ଜୀବନ କୋମଳଭାଷୀ, ଅମାୟିକ ବ୍ୟବହାର । ମୋ ନିଜର ଅନୁଭୂତି ମୁଁ ବହୁ ସମୟ ଧରି ତାଙ୍କ ସମୀପକୁ ଯାଏ । ଯେତେବେଳେ ଯାଇ ପହଞ୍ଚିଲେ ସବୁ ସମୟରେ କହୁଥିବେ ତାଙ୍କର କୁଳବଧୂ 'ମା' ଗୀତାକୁ 'ମା'ରେ ବାବୁଙ୍କୁ କ'ଣ ଖାଇବାକୁ ଦେଲୁଣି । ଏହା ଶେଷ ସମୟ ପର୍ଯ୍ୟନ୍ତ ଏହି ଶୁଭ ବାସନା ତାଙ୍କ ମନରେ ଜାଗ୍ରତ ହେଉଥିଲା । ତାଙ୍କ ମହାପ୍ରୟାଣରେ ମହିମା ଧର୍ମ ସମାଜର ଅପୂରଣୀୟ କ୍ଷତି ଘଟିଛି । ବିଶ୍ୱନୀୟନ୍ତା ପ୍ରଭୁ ପରମାତ୍ମାଙ୍କଠାରେ ପ୍ରାର୍ଥନା କରୁଛୁ, ପରମାତ୍ମା ତାଙ୍କ ଆତ୍ମାକୁ ଚିରଶାନ୍ତି ଦିଅନ୍ତୁ ।

ଗୌତମ ନଗର ମହିମାଶ୍ରମ, ଭୁବନେଶ୍ୱର



# ଗୁରୁକଳ୍ପ ଶତ୍ରୁଘ୍ନ ନାଥ

**ମହାପାତ୍ର ନୀଳମଣି ସାହୁ**

ପୂଜନୀୟ ଗୁରୁକଳ୍ପ ପ୍ରଫେସର ଶତ୍ରୁଘ୍ନ ନାଥ ଆଉ ଇହଧାମରେ ନାହାନ୍ତି- ଏହା ଶୁଣିବାମାତ୍ରେ ହଠାତ୍ ଦଣ୍ଡାୟମାନ ହୋଇ ବିନମ୍ର ଚିତ୍ତରେ ତାଙ୍କର ପରଲୋକଗତ ମହାନ୍ ଆତ୍ମା ପ୍ରତି ହାତଯୋଡ଼ି ନମସ୍କାର କଲି । ତାଙ୍କର ବିୟୋଗରେ ଓଡ଼ିଶାର ଓ ଭାରତରେ ଶିକ୍ଷାକାଶରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଲିଭିଗଲା । ତାଙ୍କ ସ୍ଥାନ ରହିଲା ଅପୂରଣୀୟ ।

ସେ କେବଳ ବୃତ୍ତିରେ ଶିକ୍ଷକ ନଥଲେ, ସେ ପ୍ରବୃତ୍ତିରେ ଶିକ୍ଷକର ପ୍ରତିଭା ନେଇ ଜନ୍ମି ଥିଲେ । ତାଙ୍କର ଜୀବନ ଥିଲା ନୀତି, ଆଦର୍ଶ ଓ ଜ୍ଞାନ ପଥରେ ନିରବଚ୍ଛିନ୍ନ ଅନୁସରଣ ଓ ଅନୁଶୀଳନ । ସେ ମହାତ୍ମା ଗାନ୍ଧୀଙ୍କ ଜୀବନାଦର୍ଶକୁ ଜୀବନରେ ଅନୁସରଣ କରୁଥିଲେ । ଅଲେଖ ଧର୍ମରେ ଦୀକ୍ଷିତ ହୋଇଥିଲେ । କିନ୍ତୁ ତାଙ୍କର ସବୁ ଧର୍ମାଦର୍ଶ ପ୍ରତି ଶ୍ରଦ୍ଧା ଭକ୍ତି ଥିଲା ଏବଂ ସେ ରାମକୃଷ୍ଣ, ବିବେକାନନ୍ଦଙ୍କ ଆଧ୍ୟାତ୍ମିକ ଦର୍ଶନକୁ ମଧ୍ୟ ସମ୍ମାନର ସହିତ ଗ୍ରହଣ ଓ ପାଳନ କରୁଥିଲେ ।

କେବଳ କଲେଜରେ ଶିକ୍ଷାବୃତ୍ତି ନୁହେଁ- ସମାଜର ବହୁବିଧ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନରେ ମଧ୍ୟ ସେ ଥିଲେ ଜଣେ ସକ୍ରିୟ କର୍ମୀ ।

ଜୀବନ ଥିଲା ତାଙ୍କର ଖୁବ୍ ଶୁଦ୍ଧ, ସରଳ, ସ୍ୱଚ୍ଛ ଓ ଉଦାର । ଶେଷ ପର୍ଯ୍ୟନ୍ତ ସେ କର୍ମ କରି ଚାଲିଥିଲେ । ଅର୍ଥ ଉପାର୍ଜନ ନୁହେଁ, ଦେଶ ଓ ମଣିଷର ସେବା ଥିଲା ତାଙ୍କ ଜୀବନର ବ୍ରତ । ଏହି ଆଦର୍ଶ ପୁରୁଷ ସମସ୍ତଙ୍କୁ ସବୁ ପ୍ରକାର ଶୁଭ କର୍ମରେ ଓ ଶୁଭ ଉଦ୍ୟମରେ ଉତ୍ସାହ ଦେଉଥିଲେ । ସବୁ ପ୍ରକାରେ ସହାୟତା ମଧ୍ୟ କରୁଥିଲେ ।

ମୋ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ସେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ ଓ ମୁଁ ତାଙ୍କୁ ଖୁବ୍ ଭକ୍ତି କରୁଥିଲି । ଆଜି ତାଙ୍କର ମହାଯାତ୍ରାରେ ମୁଁ ତାଙ୍କ ପ୍ରତି ଶେଷ ପ୍ରଣତି ଜଣାଉଛି । ଏବଂ ତାଙ୍କର ପରିବାରବର୍ଗଙ୍କ ପ୍ରତି ସମବେଦନା ଜଣାଉଛି । ମୋର ଦୃଢ଼ ବିଶ୍ୱାସ- ଏପରି ମହାନ୍ ମଣିଷମାନଙ୍କ ଆଦର୍ଶର ପ୍ରେରଣା ଆକାଶରେ ତାରାଟିଏ ହୋଇ ଜଳୁଥିବ ।

ପୂଜ୍ୟପୂଜା ପରମ୍ପରାକୁ ଉଜ୍ଜୀବିତ କରିବା ଏବଂ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ କର୍ମ ଓ ବାଣୀର ପ୍ରଚାର-ପ୍ରସାର କରିବା ଉଦ୍ଦେଶ୍ୟ ନେଇ ୨୦୦୦ ମସିହାରେ ଜନ୍ମ ନେଇଥିଲା ପ୍ରଫେସର ଶତ୍ରୁଘ୍ନ ନାଥ ଫାଉଣ୍ଡେସନ୍ । ଏହି ଫାଉଣ୍ଡେସନ୍‌ର ଉପଦେଷ୍ଟା ଅଛନ୍ତି ଶ୍ରୀ ରବି ନାରାୟଣ ସେନାପତି (ଆଇଏଏସ୍), ସଭାପତି ପ୍ରଫେସର ବାସୁଦେବ ସାହୁ, ଉପ-ସଭାପତି ଶ୍ରୀ କମଳାକାନ୍ତ ପଣ୍ଡା, କୋଷାଧ୍ୟକ୍ଷ ଶ୍ରୀମତୀ ଅଂଜଳି ନାଥ, ସାଂସ୍କୃତିକ ସଂପାଦକ ଶ୍ରୀମତୀ ବିଜୟଲକ୍ଷ୍ମୀ ପଟ୍ଟନାୟକ । ପ୍ରଫେସର ନାଥଙ୍କର ଜଣେ ସୁଯୋଗ୍ୟ ଛାତ୍ର ଡକ୍ଟର ଅରୁଣ ଚନ୍ଦ୍ର ସେଠୀଙ୍କ ବଳିଷ୍ଠ ସଂପାଦନାରେ ଏହି ଫାଉଣ୍ଡେସନ୍ ପ୍ରତିବର୍ଷ ଜଣେ କୃତୀ ଶିକ୍ଷକଙ୍କୁ ପ୍ରଫେସର ଶତ୍ରୁଘ୍ନ ନାଥ ସମ୍ମାନରେ ସମ୍ବର୍ଦ୍ଧିତ କରି ଆସୁଅଛି । ଯେଉଁ ବରେଣ୍ୟ ଶିକ୍ଷାବିତ୍ ମାନେ ଏହି ସମ୍ମାନ ପାଇବାର ଗୌରବ ଲାଭ କରିଛନ୍ତି, ସେମାନେ ହେଲେ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଭୁବନେଶ୍ୱର (୨୦୦୨), ଶ୍ରୀ ରତ୍ନାକର ବାରିକ, ଭଦ୍ରକ (୨୦୦୩), ଶ୍ରୀ ବିଷ୍ଣୁଚରଣ ଜେନା, କଟକ (୨୦୦୪), ବଙ୍କିମ ଚନ୍ଦ୍ର ମହାରଣା, ବାଲେଶ୍ୱର (୨୦୦୫), ଶ୍ରୀମତୀ ସାବିତ୍ରୀ ରାୟ, ଖୋର୍ଦ୍ଧା (୨୦୦୬) ।



# ଯୋଗଜନ୍ମା ଶତ୍ରୁଘ୍ନ ନାଥ

**ଯୁଗଳ କିଶୋର ପଟ୍ଟନାୟକ**

୧୧ ମାର୍ଚ୍ଚ ୨୦୦୬ । ସକାଳୁ ଉଠୁଉଠୁ ଟିଭିରେ ସମ୍ବାଦ ପରିବେଷଣ ବେଳେ ଫୁଟ୍ ନିଉଜ୍‌ରେ ଦେଖିଲି ଶିକ୍ଷାବିତ୍ ଶତ୍ରୁଘ୍ନ ନାଥଙ୍କର ପରଲୋକ । ହଠାତ୍ ବିଶ୍ୱାସ କରି ପାରିଲିନି । ପୁଣି ଥରେ ନିରେଖି ଦେଖିଲି ସେହି ଏକା ସମ୍ବାଦର ପୁନଃ ପ୍ରକାଶନ ଘଟିଲା । ଟେଲିଫୋନ୍‌ରେ ପଚାରି ବୁଝିଲି । ସମ୍ବାଦ ପରିବେଷଣ ସତ୍ୟ । ଗତକାଲି ରାତିରେ ଶତ୍ରୁଘ୍ନ ନାଥଙ୍କର ପରଲୋକ ଘଟିଛି । ପ୍ରାତଃ କାର୍ଯ୍ୟ ସାରି ଶୀଘ୍ର ଶହୀଦନଗରସ୍ଥ ତାଙ୍କର ବାସଭବନରେ ପହଞ୍ଚିଲି । ସେତେବେଳେ ସେଠାରେ ବହୁଳ ଜନସମାଗମ ଘଟି ସାରିଥିଲା ।

ଭିଡ଼ ଭିତରେ ତାଙ୍କର ବାସଭବନରେ ଆମ ସମସ୍ତଙ୍କର ନମସ୍ୟ ଶତ୍ରୁଘ୍ନ ନାଥଙ୍କର ମରଶରୀର ଶଯ୍ୟାଶାୟୀ ହୋଇ ରହିଥିଲା । ତାଙ୍କର ମୁଖମଣ୍ଡଳ ନିଶ୍ଚଳ ହୋଇ ରହିଥିଲା । ପଲଙ୍କ ଉପରେ ମୃତ ଶରୀରର ଚତୁଃପାର୍ଶ୍ୱରେ ପୁଷ୍ପଗୁଚ୍ଛ ଓ ମାଳରେ ପୂରୀ ଉଠିଥିଲା । ନିରବରେ ସମସ୍ତେ ତାଙ୍କର ଶେଷ ଦର୍ଶନ କରିଥିଲେ । ମୁଁ ତାଙ୍କ ଶରୀର ନିକଟରେ ଦଣ୍ଡାୟମାନ ହୋଇ ତାଙ୍କ ପ୍ରତି ପ୍ରଣତି ଜଣାଇଥିଲି ।

ଭଦ୍ରକ ପୁରୁଣା ବଜାର ନିକଟସ୍ଥ ଉତ୍ତରବାହିନୀ ଠାରେ ୰ ଭିକାରୀ ଚରଣ ନାଥଙ୍କ ଔରସରୁ ତା. ୧.୨.୧୯୧୫ରେ ଶତ୍ରୁଘ୍ନ ନାଥ ଜନ୍ମ ଗ୍ରହଣ କରିଥିଲେ । ଜନ୍ମ କାଳରୁ ସେ ଯେ ଜଣେ ଯୋଗଜନ୍ମା ତାହା ପ୍ରମାଣିତ ହୋଇଥିଲା । ଆବାଲ୍ୟରୁ ନିଜର ପ୍ରତିଭା ବଳରେ ସେ ତାଙ୍କର ଦକ୍ଷତା ପ୍ରତିପାଦିତ କରିବାକୁ ସକ୍ଷମ ହୋଇଥିଲେ । ଫଳରେ ଏକ ସାଧାରଣ ପରିବେଶରୁ ସେ ଅସାଧାରଣ ପ୍ରତିଭାର ଅଧିକାରୀ ହୋଇ ପାରିଥିଲେ । ଭଦ୍ରକର ବହୁ ପୁରାତନ ଶିକ୍ଷାନୁଷ୍ଠାନ ଭଦ୍ରକ ହାଇସ୍କୁଲରୁ ୧୯୩୪ ମସିହାରେ ମାଟ୍ରିକ୍ୟୁଲେସନ୍ ପାଶ କରି, ପାଟନା ବିଶ୍ୱବିଦ୍ୟାଳୟରୁ ଡିପ୍ଲୋମା ଇନ୍ ଏଡୁକେଶନ୍‌ରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇ ରେଭେନ୍‌ସା କଲେଜରୁ ସ୍ନାତକ ଓ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ପାଇ ଓଡ଼ିଶାର ବିଭିନ୍ନ ସ୍ଥାନରେ ସ୍କୁଲ ଓ କଲେଜମାନଙ୍କରେ ଶିକ୍ଷକତା ଓ ଅଧ୍ୟାପନା କାର୍ଯ୍ୟ ଦକ୍ଷତାର ସହ ସଂପାଦନା କରି ପାରିଥିଲେ ।

ତାଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥିଲା ୧୯୭୦-୭୧ ମସିହାରେ । ସେ ସମୟରେ ମୁଁ ଭଦ୍ରକ ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଥାଇ ଭଦ୍ରକ କଚେରିରେ ଓକିଲାତି କରୁଥାଏ । ଭଦ୍ରକ କଲେଜରେ ସେ ସମୟରେ ଛାତ୍ର ବିଶୃଙ୍ଖଳା ଚରମ ସୀମାରେ ପହଞ୍ଚିଥିଲା । କଲେଜରେ ଅଧ୍ୟକ୍ଷ ନିଯୁକ୍ତିକୁ କେନ୍ଦ୍ର କରି ପରିଚାଳନା ସମିତି ଓ ଛାତ୍ର ସମାଜ ଭିତରେ ବିଭେଦ ସୃଷ୍ଟି ହୋଇଥିଲା । ରାଜ୍ୟରେ ସେ ସମୟରେ ୰ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ସ୍ୱତନ୍ତ୍ର-ଜନ କଂଗ୍ରେସ ସରକାର ଚାଲିଥାଏ । ଭଦ୍ରକ କଲେଜରୁ ଛାତ୍ର ଅଶାନ୍ତି ଦୂର କରିବା ପାଇଁ ରାଜ୍ୟ ସରକାର କଲେଜରେ ଜଣେ ଦକ୍ଷ ନିର୍ବିବାଦୀୟ ଶିକ୍ଷାବିତ୍‌ଙ୍କୁ ଅଧ୍ୟକ୍ଷ ରୂପେ ପଠାଇବାକୁ ସ୍ଥିର କଲେ । ଫଳରେ ପ୍ରଫେସର ଶତ୍ରୁଘ୍ନ ନାଥ ଭଦ୍ରକ କଲେଜରେ ଅଧ୍ୟକ୍ଷ ପଦରେ ଯୋଗ ଦେଲେ । କଲେଜ ସେତେବେଳେ ବେସରକାରୀ ପରିଚାଳନାଗତ ଶିକ୍ଷାନୁଷ୍ଠାନ ଥିଲା । ଶତ୍ରୁଘ୍ନ ନାଥଙ୍କ ଏଠାରେ ଯୋଗଦାନ ପରେ ଅବସ୍ଥା ଆଶାତୀତ ରୂପେ ଉନ୍ନତି ଘଟିଲା । ଅଧ୍ୟକ୍ଷଙ୍କୁ କେନ୍ଦ୍ର କରି କୋର୍ଟ କଚେରୀରେ ଯେଉଁ ମାଲିମକଦ୍ଦମା ଚାଲୁଥିଲା, ସେ ସବୁର ପରିସମାପ୍ତି ଘଟିଲା ।

ଶତ୍ରୁଘ୍ନ ନାଥଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ କର୍ତ୍ତବ୍ୟ ନିଷ୍ଠା ପାଖରେ ଛାତ୍ର ସମାଜ ଓ ପରିଚାଳନା କମିଟି ସେମାନଙ୍କର ଜିଦ୍‌ରୁ ଓହରି ଯାଇ ହାରମାନି କଲେଜରେ ଉପଯୁକ୍ତ ଶିକ୍ଷା ପରିବେଶ ସୃଷ୍ଟି କରିବାରେ ସହାୟକ ହୋଇଥିଲେ । ଫଳରେ ଭଦ୍ରକରେ ଜନସାଧାରଣଙ୍କ ମନରେ ଆନନ୍ଦ ଉଲ୍ଲାସ ପରିଲକ୍ଷିତ ହୋଇଥିଲା । ଏହାର କିଛିଦିନ ପରେ ସରୋଇ ଭଦ୍ରକ କଲେଜର ପରିଚାଳନା ଭାର ରାଜ୍ୟ ସରକାର ବହନ କରିଥିଲେ ।

ଘଟଣା କ୍ରମରେ ମୁଁ ଭଦ୍ରକରେ ଲୋକ ପ୍ରତିନିଧି ରୂପେ ନିର୍ବାଚିତ ହେଲି । ୧୯୭୪ରେ ପ୍ରଥମେ ଭଦ୍ରକ ବିଧାନସଭାର ପ୍ରତିନିଧି ଓ ୧୯୮୦ରୁ ୧୯୮୯ ପର୍ଯ୍ୟନ୍ତ ରାଜ୍ୟ ମନ୍ତ୍ରୀମଣ୍ଡଳରେ ଯୋଗ ଦେଲି ।

କ୍ରମେକ୍ରମେ ଅଧ୍ୟାପକ ଶତ୍ରୁଘ୍ନ ନାଥଙ୍କ ସହ ମୋର ଘନିଷ୍ଠତା ବଢ଼ିଥିଲା । ସେ ଯେହେତୁ ଭଦ୍ରକରୁ ଆସିଥିଲେ ଏବଂ ଭଦ୍ରକରୁ ମୁଁ



ଯେହେତୁ ପ୍ରତିନିଧିତ୍ୱ କରୁଥିଲି, ପ୍ରତ୍ୟେକ ଉନ୍ନତିମୂଳକ କାର୍ଯ୍ୟରେ ତାଙ୍କର ମୂଲ୍ୟବାନ ପରାମର୍ଶକୁ ମୋ ପାଇଁ ପଥ ପ୍ରଦର୍ଶକ ହେଉଥିଲା ।

ଭଦ୍ରକ କଲେଜର ଅଭିବୃଦ୍ଧି, ଭଦ୍ରକରେ ଥିବା ଇଞ୍ଜିନିୟରିଂ ସ୍କୁଲର ପୁନଃ ପ୍ରଚଳନ, ଭଦ୍ରକରେ ଏକ ମହିଳା ମହାବିଦ୍ୟାଳୟ ସ୍ଥାପନ ଆଦିରେ ୰ ଶତ୍ରୁଘ୍ନ ନାଥ ପ୍ରେରଣା ମୋ ପାଇଁ ସହାୟକ ହେଲା । ଫଳରେ ଭଦ୍ରକ କଲେଜର ବିଭିନ୍ନ ପୋଷ୍ଟ ଗ୍ରାଜୁଏଟ୍ ଶ୍ରେଣୀ ଖୋଲିବା, ଅନର୍ସ ଶ୍ରେଣୀ ଖୋଲିବା ଓ ହଷ୍ଟେଲ୍ ଓ କଲେଜ ଗୃହର ସଂପ୍ରସାରଣ କରିବା ଆଦି କାର୍ଯ୍ୟ କରିବା ସମ୍ଭବପର ହୋଇପାରିଥିଲା । ବରପଦାଠାରେ ଥିବା ଇଂଜିନିୟରିଂ ସ୍କୁଲକୁ ପୁଣି ଥରେ ଖୋଲାଗଲା । ଫଳରେ ଆଜି ତାହା ଇଂଜିନିୟରିଂ କଲେଜରେ ପରିଣତ ହୋଇପାରିଛି । ଭଦ୍ରକ ଆଞ୍ଚଳିକ ବୈଷମ୍ୟତା ଦୂରିକରଣ ପାଇଁ ଚରମ୍ପାଠାରେ ଚରମ୍ପା ମହାବିଦ୍ୟାଳୟ, ତାଙ୍କରି ନିଜ ଗାଁ ଉତ୍ତରବାହିନୀଠାରେ ସାନନ୍ଦୀ କଲେଜ ଓ ଭଦ୍ରକ ମହିଳା ମହାବିଦ୍ୟାଳୟମାନ ସ୍ଥାପିତ ହୋଇ ପାରିଛି । ଏଥିପାଇଁ ତାଙ୍କରି ପ୍ରେରଣା ମୋତେ ଅନେକାଂଶରେ ସହାୟକ ହୋଇପାରିଛି ।

ଅଧ୍ୟାପକ ଶତ୍ରୁଘ୍ନ ନାଥ ଥିଲେ ଜଣେ ବିଶିଷ୍ଟ ଶିକ୍ଷାବିତ୍ । ଶିକ୍ଷକତା ଥିଲା ତାଙ୍କ ଜୀବନର ମୂଳ ମନ୍ତ୍ର । ଫଳରେ ଜଣେ ଆଦର୍ଶ ଶିକ୍ଷକ ଓ ଅଧ୍ୟାପକ ରୂପେ ସମଗ୍ର ଛାତ୍ର ସମାଜର ସେ ପ୍ରିୟଭାଜନ ହୋଇପାରିଥିଲେ ।

ଶିକ୍ଷାଦାନ ବ୍ୟତୀତ ଶତ୍ରୁଘ୍ନ ନାଥ ଥିଲେ ଜଣେ ଶ୍ରେଷ୍ଠ ଲେଖକ, ପ୍ରାବନ୍ଧିକ ଓ ସାହିତ୍ୟକାର । ତାଙ୍କରି ମୂଲ୍ୟବାନ ଲେଖା ସବୁ ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରି ଗଢ଼ି ତୋଳିଛି । ତାଙ୍କରି ଲିଖିତ ଅର୍ଦ୍ଧଶତକରୁ ଊର୍ଦ୍ଧ୍ୱ ପୁସ୍ତିକା ପ୍ରକାଶିତ ହୋଇ ଓଡ଼ିଆ ପାଠକଙ୍କୁ ସହାୟକ ହୋଇ ପାରିଛି । ତାଙ୍କରି ଲିଖିତ ଶହଶହ ଲେଖା ପ୍ରବନ୍ଧ ଆକାରରେ ଓଡ଼ିଆରେ ପ୍ରକାଶିତ ଅସଂଖ୍ୟ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ପାଠକମାନଙ୍କୁ ସହାୟକ ହୋଇଛି ।

ଭଦ୍ରକରୁ ଆସି ଭୁବନେଶ୍ୱରରେ ବସବାସ କରୁଥିବା ଅଧିବାସୀମାନଙ୍କୁ ନେଇ ଗଠିତ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ 'ମିଳନୀ' ୧୯୬୯ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ୧୯୮୪ ମସିହାଠାରୁ ମୁଁ ଏହି ଅନୁଷ୍ଠାନର ସଭାପତି ଦାୟିତ୍ୱ ବହନ କରିଥିଲି । ଏହି ଅନୁଷ୍ଠାନର ଶତ୍ରୁଘ୍ନ ନାଥ ଥିଲେ ଜଣେ ପ୍ରମୁଖ ପୃଷ୍ଠପୋଷକ । ତାଙ୍କରି ସକ୍ରିୟ ସହଯୋଗରେ 'ମିଳନୀ' ପ୍ରତିବର୍ଷ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ, ସମାଜସେବା ଓ ପ୍ରକାଶନ କାର୍ଯ୍ୟକ୍ରମ କରି ଚାଲିଛି । ଏହି ଅନୁଷ୍ଠାନର ମୁଖପତ୍ର 'ମିଳନୀ'ରେ ସେ ପ୍ରାୟ ତାଙ୍କର ମୂଲ୍ୟବାନ ଲେଖାମାନ ଦେଇ ଏହାର କଳେବରର ଅଭିବୃଦ୍ଧି କରାଇବାରେ ସହାୟକ ହୋଇଥିଲେ । ତାଙ୍କର ପ୍ରଦତ୍ତ ଲେଖାସବୁ 'ମିଳନୀ' ବିଶେଷାଙ୍କମାନଙ୍କରେ ପ୍ରକାଶିତ ହୋଇ ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇପାରିଛି ।

ମୋର ତାଙ୍କ ସହିତ ଶେଷଥର ପାଇଁ ସାକ୍ଷାତ ହୋଇଥିଲା ଗଲାବର୍ଷ ୩୦.୧.୨୦୦୫ରେ ତାଙ୍କରି ସହିଦନଗରସ୍ଥ ବାସଭବନରେ । ତାଙ୍କ ସହିତ ଆଳାପଆଲୋଚନା ଛଳରେ ଆମର ବାର୍ଷିକୋତ୍ସବ କାଳରେ ପ୍ରକାଶ ପାଉଥିବା 'ମିଳନୀ' ବିଶେଷାଙ୍କ ପାଇଁ ଗୋଟିଏ ଲେଖା ପାଇଁ ତାଙ୍କୁ ଅନୁରୋଧ କରିଥିଲି । ମାତ୍ର ଅସୁସ୍ଥତା କାରଣରୁ ଲେଖା ଦେବା ତାଙ୍କ ପକ୍ଷେ ସମ୍ଭବପର ନୁହେଁ ବୋଲି ପ୍ରକାଶ କରି 'ମିଳନୀ'ରେ ପ୍ରକାଶନ ପାଇଁ ଏକ କ୍ଷୁଦ୍ର ବାର୍ତ୍ତା ପ୍ରଦାନ କରିଥିଲେ । ତାହା ଯଥା ସମୟରେ 'ମିଳନୀ'ର ୨୦୦୫ ବିଶେଷାଙ୍କରେ ପ୍ରକାଶିତ ହୋଇଛି ।

ଆଜି ସେ ଆମ ଗହଣରେ ନାହାନ୍ତି । ତାଙ୍କରି ସେହି ଅମଳିନ ହସହସ ମୁହଁ ଆଉ ଆମକୁ ଦେଖିବାକୁ ମିଳିବନି । କିମ୍ବା ତାଙ୍କର ମୂଲ୍ୟବାନ ଉପଦେଶ ଆଉ ଆମକୁ ଶୁଣିବାକୁ ମିଳିବ ନାହିଁ ।

ତାଙ୍କରି ବିୟୋଗରେ ଆଜି ତାଙ୍କରି ଏକାଦଶ ଦିବସରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ମୁଁ ଅର୍ପଣ କରୁଛି ଏବଂ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି । ପ୍ରଭୁ ପରମେଶ୍ୱର ତାଙ୍କର ଆତ୍ମୀୟସ୍ୱଜନ ଓ ପରିବାରବର୍ଗଙ୍କୁ ଧୈର୍ଯ୍ୟର ସହିତ ଆଜିର ଏ ଦୁର୍ଦ୍ଦିନରେ ପିରସ୍ଥିତିର ମୁକାବିଲାକରିବାକୁ ଅସୀମ ଧୈର୍ଯ୍ୟ ପ୍ରଦାନ କରନ୍ତୁ, ଏହାହିଁ ମୋର ପ୍ରାର୍ଥନା ।

'ଜାହ୍ନବୀ', ସି-୨୩, ବକ୍ସି ଜଗବନ୍ଧୁନଗର
ଭୁବନେଶ୍ୱର-୧୪



# ମହାରଥୀଙ୍କ ମହାପ୍ରୟାଣ

**ରବିନାରାୟଣ ସେନାପତି**

ପ୍ରଫେସର ଶତ୍ରୁଘ୍ନ ନାଥ ଶିକ୍ଷା କ୍ଷେତ୍ରରେ ଜଣେ କିମ୍ବଦନ୍ତୀ ପୁରୁଷ । ଜଣେ ଶିକ୍ଷକ ହିସାବରେ ସେ ସାରା ଜୀବନ ଅତିବାହିତ କରିଛନ୍ତି । ଶିକ୍ଷା, ଶିକ୍ଷାର୍ଥୀ, ପ୍ରଶିକ୍ଷଣ ଏବଂ ଶିକ୍ଷା ପ୍ରଶାସନ କ୍ଷେତ୍ରରେ ସାରା ଜୀବନ ଜଣେ ସଂଗ୍ରାମୀର ବ୍ରତ ପାଳନ କରିଛନ୍ତି । ଜଣେ ଶିକ୍ଷାର୍ଥୀ ଭାବରେ ନାନା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ସେ ହାରି ଯାଇ ନଥିଲେ । ବରଂ ନିଜର ସାଧନା ଓ ଅଧ୍ୟବସାୟ ବଳରେ ସମଗ୍ର ବିହାର ଓ ଓଡ଼ିଶା ମଧ୍ୟରେ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ସମଗ୍ର ରାଜ୍ୟକୁ ଗୌରବମଣ୍ଡିତ କରିଥିଲେ । ବିଦେଶରୁ ଶିକ୍ଷାପ୍ରାପ୍ତ କରି ମଧ୍ୟ ସେ ମୌଳିକ ଶିକ୍ଷା ବ୍ୟବସ୍ଥାର ପ୍ରବର୍ତ୍ତକ ଏବଂ ସଂଗଠକ ହିସାବରେ ନିଷ୍ପାପର ସଂଗ୍ରାମ ଜାରି ରଖିଥିଲେ । ପୁନଶ୍ଚ ଶିକ୍ଷକମାନଙ୍କର ପ୍ରଶିକ୍ଷଣ କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ । ଋକିରୀ ଜୀବନର ଅନ୍ତିମ ପର୍ଯ୍ୟାୟରେ ଭଦ୍ରକ ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱ ବହନ କରି ସେ ଯେଉଁ କଠୋର ପରୀକ୍ଷାର ସମ୍ମୁଖିନ ହୋଇଥିଲେ ସେଥିରେ ସଫଳତାର ସହ ଉତ୍ତୀର୍ଣ୍ଣହୋଇ ଭଦ୍ରକ ମହାବିଦ୍ୟାଳୟରେ ଶାନ୍ତି ଏବଂ ସୁସ୍ଥ ବାତାବରଣ ପୁନଃ ପ୍ରତିଷ୍ଠା କରିପାରିଥିଲେ । ସେହି ସମୟରେ ତାଙ୍କ ସହିତ ଜଣେ ଛାତ୍ର ହିସାବରେ ମୋର ପ୍ରତ୍ୟକ୍ଷ ସଂପର୍କ ସ୍ଥାପିତ ହୋଇଥିଲା । ତାଙ୍କ ସହ ପ୍ରଥମ ଦର୍ଶନରେ ସ୍ୱତଃ ତାଙ୍କ ପ୍ରତି ମୋର ଭକ୍ତି ଓ ସମ୍ମାନ ଅଜାଡ଼ି ହୋଇ ପଡ଼ିଥିଲା ।

ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ସହ ମୋର ଶେଷ ସାକ୍ଷାତ ହୋଇଥିଲା ଗତ ଫେବୃୟାରୀ ୧ ତାରିଖ ଦିନ ତାଙ୍କ ଜନ୍ମ ଜୟନ୍ତୀ ପାଳନ ଅବସରରେ । ବନ୍ଧୁ ଡାକ୍ତର ଅରୁଣଚନ୍ଦ୍ର ସେଠୀଙ୍କ ଉଦ୍ୟମରେ ଆୟୋଜିତ ଏହି ଉତ୍ସବରେ ପ୍ରତିବର୍ଷ ପରି ଏବର୍ଷ ମଧ୍ୟ ମୁଁ ଉପସ୍ଥିତ ଥିଲି । ଶାରୀରିକ ଅସୁସ୍ଥତା ହେତୁ ସାର୍ ଟିକେ ବିଳମ୍ବରେ ଆସି ପହଞ୍ଚିଲେ । ସେ ଆସିଗଲା ପରେ ସଭାସ୍ଥଳରେ ଉପସ୍ଥିତ ସମସ୍ତଙ୍କ ମଧ୍ୟରେ ଏକ ଅନିର୍ବଚନୀୟ ଆନନ୍ଦର ଲହରୀ ଖେଳିଗଲା । ତାଙ୍କୁ ଯଥାବିଧି ଭକ୍ତିପ୍ଲୁତ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । ସଭା ଶେଷ ହେବା ପୂର୍ବରୁ ସେ ସଭା ସ୍ଥଳରୁ ବିଦାୟ ନେଲେ । ମାତ୍ର କିଏ ଜାଣିଥିଲା ସେ ସଭା ଥିଲା ଆମ ମାନଙ୍କ ଗହଣରେ ଶେଷ ଉପସ୍ଥିତି । ହଠାତ୍ ମାର୍ଚ୍ଚ ମାସ ୧୧ ତାରିଖ ସକାଳେ ଯେତେବେଳେ ମୁଁ ଖବର ପାଇଲି ଯେ ସାର୍ ଇହଧାମରୁ ବିଦାୟ ନେଲେ ସେତେବେଳେ ମୁଁ ଶୋକାଭିଭୂତ ହୋଇପଡ଼ିଲି । ତାଙ୍କର ଶେଷ ଦର୍ଶନ ପାଇଁ ପହଞ୍ଚିଲି ତାଙ୍କ ସହିଦନଗରସ୍ଥିତ ବାସଭବନରେ । ସେ ଚିରନିଦ୍ରାରେ ଶୋଇଥିଲେ । ସେଇମିତି ଧୀର, ସ୍ଥିର, ପ୍ରଶାନ୍ତ ମୁଖମଣ୍ଡଳ ଭିତରେ ବିରାଜମାନ କରୁଥିଲା ଅଖଣ୍ଡ ଶାନ୍ତି । ସେଇଠି ଭିଡ଼ ଲାଗିଥିଲା ତାଙ୍କର ଛାତ୍ର, ବନ୍ଧୁ ଏବଂ ବାନ୍ଧବମାନଙ୍କର । ଜୀବନ ସଂଗ୍ରାମର ଜଣେ ମହାରଥୀ ବିଦାୟ ନେଇସାରିଥିଲେ । ପ୍ରଫେସର ଶତ୍ରୁଘ୍ନ ନାଥ ଏକ ଆଦର୍ଶର ଆଲୋକ ବର୍ତ୍ତିକା, ଯାହା ଆଲୋକିତ କରି ରଖିଛି ଓଡ଼ିଶାର ଶିକ୍ଷା ଏବଂ ସାରସ୍ୱତ ଜଗତକୁ । ତାଙ୍କର ସ୍ମୃତି ଅମ୍ଳାନ ଏବଂ କୀର୍ତ୍ତି ମହାନ ।

ତାଙ୍କର ଅମର ଆତ୍ମା ପ୍ରତି ଏହି ଅବସରରେ ମୋର ଭକ୍ତିପ୍ଲୁତ ଶ୍ରଦ୍ଧାଞ୍ଜଳୀ ।

# ପ୍ରଫେସର ଶତ୍ରୁଘ୍ନ ନାଥ ସ୍ମରଣେ

**କିଶୋର ଚନ୍ଦ୍ର ଦାସ**

ପ୍ରଫେସର ଶତ୍ରୁଘ୍ନ ନାଥ ଜଣେ ବଳିଷ୍ଠ ଗାନ୍ଧିବାଦ ବ୍ୟକ୍ତି ଥିଲେ । ସେ ଥିଲେ ମୌଳିକ ଶିକ୍ଷାର କର୍ଣ୍ଣଧାର । ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରଚାରରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଶିକ୍ଷାର ଉନ୍ନତି ପାଇଁ ତାଙ୍କର ଦାନ ଅତୁଳନୀୟ । ତାଙ୍କ ହୃଦୟରେ ପ୍ରେମ, ସତ୍ୟତା, ଉଦାରତା, ଦୟା, ଶ୍ରଦ୍ଧା, ଭକ୍ତି ଓ ଉତ୍ସାହର ଭାବ ସୃଷ୍ଟି ହୋଇଥିଲା । ପରମବନ୍ଧୁ ଓ ସହଯୋଗୀ ହିସାବରେ ସେ ଆମ ସମସ୍ତଙ୍କ ନମସ୍ୟ । ମହିମା ଧର୍ମ ପ୍ରତି ତାଙ୍କର ଆଦର ଖୁବ୍ ଥିଲା । ବଳିଷ୍ଠ ଶିକ୍ଷାବିତ୍ ହିସାବରେ ସେ ଘରେ ଘରେ ପରିଚିତ । ତାଙ୍କର ଆତ୍ମାର ସଦ୍‌ଗତି ଆମେ ସମସ୍ତେ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛୁ ।

କ୍ରିୟାଯୋଗ ଆଶ୍ରମ, ଭୁବନେଶ୍ୱର



# ସେ ମଧ୍ୟ ଥିଲେ ବିଲାତ ଫେରନ୍ତା

**ଶାନ୍ତନୁ କୁମାର ଆଚାର୍ଯ୍ୟ**

ପ୍ରଫେସର ଶତ୍ରୁଘ୍ନ ନାଥଙ୍କୁ ଆମେ ଶହୀଦ ନଗରବାସୀ ଆମର ଏକାନ୍ତ ଆପଣାର ଜଣେ ଅଭିଭାବକ ଭାବେ, ତାଙ୍କର ୬୮ ୯ ନମ୍ବର ବାସଗୃହରେ ବେଳ ଅବେଳରେ, ଦୁଃଖ ସୁଖରେ, ସାକ୍ଷାତ କରୁଥିଲୁ ଆଉ ପରାମର୍ଶ ନେଉଥିଲୁ । କିନ୍ତୁ ଗତ ମାର୍ଚ୍ଚ ଦଶ ତାରିଖ ଅର୍ଦ୍ଧରାତ୍ରରେ, ଆମ୍ଭମାନଙ୍କର ସେଇ ଆଶ୍ରୟ ସ୍ଥଳକୁ ଶୂନ୍ୟ କରି ସାରଙ୍କ ଆତ୍ମା ବ୍ରହ୍ମରେ ଲୀନ ହୋଇଯିବା ଦୁଃସମ୍ବାଦ ରଟିବା ପରେ ଆମେ ଅତ୍ୟନ୍ତ ନିରାଶ୍ରୟ ହୋଇପଡ଼ିଛୁ । ଏଇ ନିରାଶ୍ରୟ ଅବସ୍ଥାରେ ଆମେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ କେବଳ ତାଙ୍କ ସ୍ମୃତିକୁ ଜାବୁଡ଼ି ଧରି ଜୀବନର ବାକି ଅଂଶ ବଞ୍ଚି ରହିବୁ ଜାଣି ସେଇ ସ୍ମୃତି ଚାରଣ କରୁଛୁ ।

୧୯୪୫ରେ ଆଜିକୁ ଏକଷଠି ବର୍ଷ ତଳେ, ସାରଙ୍କ ଛାତ୍ର ହେବାର ସୁଯୋଗ ମିଳିଥିଲା ମତେ, ମାତ୍ର କେତୋଟି ଦିନ ଲାଗି ଯାହା ବାସ୍ ସେତିକି ମୋର ଛାତ୍ର ପଣିଆ ସେଇଗୁରୁଙ୍କ ନିକଟରେ ! ସେ ବର୍ଷ ଜୁଲାଇ ମାସରେ ମୁଁ କଟକର ରେଭେନ୍ସା କଲେଜିଏଟ୍ ସ୍କୁଲରେ, ଅଷ୍ଟମ ଶ୍ରେଣୀରେ ନାଁ ଲେଖେଇ ଥିଲି । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ତଥାପି ଶେଷ ହୋଇ ନଥାଏ । ଜର୍ମାନୀ ପରାସ୍ତ ହୋଇଥାଏ । ହିଟଲରର ପତନ ହୋଇସାରିଥାଏ ମେ ମାସରେ ସିନା; କିନ୍ତୁ ଜାପାନ ସେ ପର୍ଯ୍ୟନ୍ତ ମୁଣ୍ଡ ନୁଆଁଇ ନଥାଏ । ପରମାଣୁ ବୋମା ହିରୋସୀମା ଓ ନାଗାସାକି ଉପରେ ଅମାନୁଷିକ ନିଷ୍ଠୁରତାର ପରିଣତି ସ୍ୱରୂପ ବର୍ଷା କରି ନଥାଏ ଆମେରିକା । ତଥାପି ଯୁଦ୍ଧର ପରାଭବ କମି ଯାଇଥାଏ ଅନେକଟା । ପୁଣି ସେଇ ଅବସରରେ ମହାତ୍ମାଗାନ୍ଧୀଙ୍କ ସ୍ୱଦେଶୀ ଆନ୍ଦୋଳନ ଘନେଉଥାଏ- ଗଛରେ ଝୁଲୁଥିବା କଞ୍ଚା ଆମ୍ବ ଦିନପରେ ଦିନ ପାଚି ଆସୁଥିଲା ପରି । ପ୍ରତି ମୁହୂର୍ତ୍ତରେ ଶୁଣାଯାଉଥାଏ, ଏଇ ଆସିଗଲା ସ୍ୱାଧୀନତା ଭାରତୀୟଙ୍କ ହାତ ପାହାନ୍ତିକୁ ! ମହାତ୍ମା ଗାନ୍ଧୀ ଅଂହିସା ଆଉ ସ୍ୱଦେଶୀ ଆନ୍ଦୋଳନର ସମୁଦ୍ର ଲହଡ଼ି ଆଗରେ ଇଂରେଜୀ ଜାଠ ସରକାର ନିଆଁଗିଳା ପ୍ରଧାନମନ୍ତ୍ରୀ ଓ୍ୱିନଷ୍ଟନ୍ ଚର୍ଚ୍ଚିଲ୍‌ର ଉପନିବେଶବାଦୀ ବାଲି ବନ୍ଧ ଭୁଷୁଡ଼ି ପଡ଼ିବ ଆଉ ମାତ୍ର ଦିନ କେତେଟାରେ । ରହ, ଅପେକ୍ଷା କର । ଭାରତ ସ୍ୱାଧୀନ ହେବ । ମହାତ୍ମା ଗାନ୍ଧୀଙ୍କ ଅହିଂସା ଆଉ ସହାବସ୍ଥାନ ନୀତିର ରାଜତ୍ୱ ଆରମ୍ଭ ହେବ ଏ ଦେଶରେ । ଉପନିବେଶବାଦର ମୂଳପୋଛ ହେବ, ପୁଲିସ ରାଜ, ଓକିଲ ରାଜ, ଗୁଣ୍ଡା ରାଜ, କଣ୍ଟ୍ରୋଲ ଦୋକାନୀ ରାଜ, କଣ୍ଟ୍ରାକ୍ଟର ରାଜ ଆଉ ଚଳିବ ନାହିଁ ଭାରତରେ ।

ଆମେ ଛାତ୍ରମାନେ ଅପେକ୍ଷା କରୁଥାଉ- କେତେବେଳେ ଆସିବ ଏ ସୁବର୍ଣ୍ଣ ମୁହୂର୍ତ୍ତ । ସ୍ୱପ୍ନ ସଫଳ ହେବ । ଦେଶ ସ୍ୱାଧୀନ ହେବ । ମହାତ୍ମାଗାନ୍ଧୀଙ୍କ ରାଜୁତି ଚାଲିବ ଭାରତବର୍ଷରେ ।

ସେତିକିବେଳେ ହଠାତ୍ ଶୁଣିବାକୁ ମିଳିଲା- ଆମ କଲେଜିଏଟ୍ ସ୍କୁଲର ଜଣେ ଶିକ୍ଷକ ଶତ୍ରୁଘ୍ନ ନାଥଙ୍କୁ ବ୍ରିଟିଶ ସରକାର ଇଂଲଣ୍ଡ ପଠେଉଛି ସେଠାରେ ଆହୁରି ବେଶୀ ପାଠ ପଢ଼ିବାକୁ । ସେକାଳେ ଉପନିବେଶବାଦୀ ବ୍ରିଟିଶ ସରକାର ବୋଲି କହି ଯାହାକୁ ଆମେ ଘୃଣା କରିବାକୁ ଶିଖିଥିଲୁ ସେଇ ସରକାର ଶିକ୍ଷାର ଗୁଣାତ୍ମକ ବିକାଶ ଲାଗି କେବଳ କଲେଜ ଶିକ୍ଷକ ନୁହେଁ, ବଛାବଛା ସ୍କୁଲ ଶିକ୍ଷକମାନଙ୍କୁ ମଧ୍ୟ ଉଚ୍ଚତର ଶିକ୍ଷା ଓ ଆଧୁନିକ ଶିକ୍ଷା ପଦ୍ଧତିରେ ତାଲିମ ନେବା ପାଇଁ ସରକାରୀ ତହବିଲରୁ ଟଙ୍କା ଖର୍ଚ୍ଚକରି ପଠାଉଥିଲା ବିଲାତ- ଯାହା ବର୍ତ୍ତମାନର ଗଣତାନ୍ତ୍ରିକ ଭାରତ ସରାକର ପାଇଁ ଏକଦମ ଅଦରକାରୀ, ଅପବ୍ୟୟ ଛଡ଼ା ଅନ୍ୟ କିଛି ନୁହେଁ ନିଶ୍ଚୟ । ଆମ ସାର୍ ଶତ୍ରୁଘ୍ନ ନାଥଙ୍କୁ ତାପରେ ଆମେ ଆଉ ଭେଟି ନଥିଲୁ କେବେ ବି ଆମର ସେଇ କଲେଜିଏଟ୍ ସ୍କୁଲରେ । କିନ୍ତୁ ଆମେ ଜାଣିଥିଲୁ ସାର୍ ବିଲାତରେ ଟ୍ରେନିଂ ନେଇ ଯଥା ସମୟରେ ଫେରି ଆସିଥିଲେ- ଓଡ଼ିଶାକୁ । କିନ୍ତୁ ସେ କେଉଁଠାରେ କେଉଁ ପଦବୀରେ ଅବସ୍ଥାପିତ ହୋଇଥିଲେ ତାର ଖବର ନଥିଲା ଅନେକ ବର୍ଷ ପର୍ଯ୍ୟନ୍ତ ମୋ ପାଖରେ ।

ସେତେବେଳେ ମୁଁ ରେଭେନ୍ସା କଲେଜର ଛାତ୍ର । ମୋ ଜାଣିବାରେ ସେଇ ୧୯୪୫ ମସିହାରେ ଆମ ସ୍କୁଲ ଶିକ୍ଷକ ଶତ୍ରୁଘ୍ନ ନାଥଙ୍କ ବ୍ୟାଚରେ ସେଇ ଇଂଲଣ୍ଡରେ ଉଚ୍ଚତର ଶିକ୍ଷା ପାଇବା ପାଇଁ ରେଭେନ୍ସା କେତେ ଜଣ ମାର୍କାମାରା ପ୍ରଫେସର ମଧ୍ୟ ଯାଇଥିଲେ ବିଦେଶ । ସେମାନେ ସମସ୍ତେ ବିଦେଶରୁ ପି.ଏଚ୍.ଡ଼ି., ବା ସେଇଭଳି କିଛି ବଡ଼ ଡିଗ୍ରୀ ଧରି ଫେରି ଆସିଥିଲେ ଓଡ଼ିଶା ଆଉ ପୋଷ୍ଟିଂ ପାଇଥିଲେ ସେଇ ରେଭେନ୍ସା କଲେଜରେ । ସେମାନେ ଥିଲେ କଲେଜର ମାର୍କାମରା ପ୍ରଫେସର ଏଇ କାରଣରୁ ଯେ ସେମାନେ ପ୍ରାୟ ସମସ୍ତେ ପିନ୍ଧୁଥିଲେ ସୁଟ, ବୁଟ୍ ଆଉ କଥାବାର୍ତ୍ତା କରୁଥିଲେ ପୂରା ସାହେବଙ୍କ ଭଳି ସବୁବେଳେ ଦାନ୍ତଚିପା ଇଂରେଜିରେ । କ୍ଲାସରୁମ୍‌ରେ ମଧ୍ୟ ସେମାନେ ଯାହା ପଢ଼ାଉଥିଲେ ସେସବୁର ମୂଳରେ



ଥିଲା- ପାଶ୍ଚାତ୍ୟ ଶିକ୍ଷା ସଂସ୍କୃତିର ନିର୍ଲଜ ଜୟଗାନ । ସେମାନେ ସୁବିଧା ପାଇବା ମାତ୍ରେ ପିଲାମାନଙ୍କୁ ପ୍ରବର୍ତ୍ତାଉ ଥିଲେ- ଅହିଂସା ସତ୍ୟ ଅସ୍ତେୟ ବ୍ରହ୍ମଚର୍ଯ୍ୟ ଅସଂଗ୍ରହ ଇତ୍ୟାଦି ତୁଚ୍ଛା ଭାରତୀୟ ବାବାଜିଆ ବିଷୟଗୁଡ଼ାକୁ ବର୍ଜନ କରି ସିଧା ବୈଜ୍ଞାନିକ ମେଥଡ଼ ଅର୍ଥାତ୍ ପାଶ୍ଚାତ୍ୟ ଚିନ୍ତାଧାରା ଓ ଜଡ଼ବାଦୀ ଦର୍ଶନକୁ ଆଦରି ନେବାକୁ । ସ୍ୱାଧୀନ ଭାରତରେ ବ୍ରିଟିଶ ରାଜତ୍ୱ ସିନା ନାଁକୁ ମାତ୍ର ଉଠିଯାଇଥିଲା କିନ୍ତୁ ଇଂରେଜୀ ଭାଷା ଓ ସେମାନଙ୍କ ଉପନିବେଶବାଦୀ କୌଶଳ ସବୁ ସେମିତି କାର୍ଯ୍ୟକାରୀ ହୋଇ ରହିଥିଲା ଶିକ୍ଷା ବିଭାଗରେ । ସେସବୁର ଉଦ୍ୟୋକ୍ତା ଥିଲେ ସେଇ ତଥାକଥିତ ଇଂଲଣ୍ଡ ଫେରନ୍ତା ଆମ ଗୁରୁ ବା ଶିକ୍ଷକମାନେ । ସେମାନଙ୍କୁ ଦେଖି ମୁଁ ଭାବିଥିଲି ମୋର ଅଷ୍ଟମ ଶ୍ରେଣୀରେ ସେଇ ସାର ଯେ ସେବର୍ଷ ଇଂଲଣ୍ଡ ଯାଇଥିଲେ ପାଠ ପଢ଼ିବା ପାଇଁ ସେଇ ଆମ ସାର୍ ଶତ୍ରୁଘ୍ନ ନାଥ ମଧ୍ୟ ଏ ଦଳକ କଲେଜ ସାରଙ୍କ ଭଳି କୋର୍ଟ ପ୍ୟାଣ୍ଟ ଟାଇ ଭିଡ଼ି ବିଲାତରୁ ଫେରି ଥିବେ ପୂରା ସାହେବ ପାଲଟି ଯାଇ କୋଉ ସ୍କୁଲରେ ଚାକିରି କରୁଥିବେ ତାପରେ କେଜାଣି ।

କିନ୍ତୁ ଦିନେ ଜଣେ ନିମନ୍ତ୍ରିତ ଅତିଥିଭାବେ ମୁଁ ଯାଇଥିଲି ଭୁବନେଶ୍ୱରର ତତ୍କାଳୀନ ଶିକ୍ଷକ ପ୍ରଶିକ୍ଷଣ ଅନୁଷ୍ଠାନ- ଷ୍ଟେଟ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଜୁକେଶନକୁ । ସେତେବେଳେ ମୁଁ ନିଜେ କଲେଜ ଅଧ୍ୟାପକ । ଏ ଇନ୍‌ଷ୍ଟିଚ୍ୟୁଟ୍‌ର ନିର୍ଦ୍ଦେଶକଙ୍କ ଅଫିସକୁ ପଶିବା ପୂର୍ବରୁ ନାମ ଫଳକରେ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ନାଁଟିକୁ ଦେଖି ମୁଁ ରୋମାଞ୍ଚିତ ହୋଇ ଉଠିଲି । କାରଣ ୧୯୪୫ରେ ମୋ ଅଷ୍ଟମ ଶ୍ରେଣୀ ବର୍ଷର କଲେଜିଏଟ୍ ସ୍କୁଲରେ ସେଇ କ୍ଷଣିକ ପରିଚୟ ଅନ୍ତେ ସାରଙ୍କୁ ମୁଁ ବିଗତ ଦଶ ବା ପନ୍ଦର ବର୍ଷ ପରେ ସେଇ ପ୍ରଥମ ବାର ଭେଟିବାକୁ ଯାଉଥିଲି ।

ପରଦା ଆଡ଼େଇ ଭିତରକୁ ପଶିଯିବା ମାତ୍ରେ ଆଖିରେ ଯେଉଁ ଦୃଶ୍ୟ ପଡ଼ିଲା ତାହା ଏଯାବତ୍ ମୋ ସ୍ମୃତି ପଟରେ ଉଜ୍ଜ୍ୱଳ ଚିତ୍ରପଟ ଟିଏ ପରି ଉଜ୍ଜୀବିତ ହୋଇ ରହିଛି । ମୁଁ ଦେଖିଲି ଜଣେ ତୁଷାରଶୁଭ୍ର ଖଦୀ ପଞ୍ଜାବୀ ପରିହିତ ସହାସ୍ୟ ବଦନ ବ୍ୟକ୍ତି ମତେ ତାଙ୍କ ଅନୁଷ୍ଠାନର ଜଣେ ସମ୍ମାନିତ ଅତିଥିଭାବେ ସ୍ୱାଗତ କରିବାକୁ ଦୁଇହାତ ଯୋଡ଼ି ଦଣ୍ଡାୟମାନ ହୋଇଛନ୍ତି ! ତତ୍‌କ୍ଷଣାତ୍ ଇଲେକ୍ଟ୍ରିକ୍ ସୁଇଚ୍ ଟିପି ହେଇଗଲା ପରି ମୋର ସ୍ମୃତି ୧୯୪୫ରେ ସେଇ କ୍ଷଣିକ ପିରିଚିତ ଶିକ୍ଷକଙ୍କ ବ୍ୟକ୍ତିତ୍ୱକୁ ଚିହ୍ନିନେଇ ବାରମ୍ବାର ଝଲସି ଉଠିଲା । ମୁଁ ତତ୍‌କ୍ଷଣାତ୍ ସାରଙ୍କ ପାଦ ତଳେ ପଡ଼ିଗଲି । ସେଇ ସାର୍ ଥିଲେ- ଆମ ସମୟର ଯଥାର୍ଥ ଶିକ୍ଷାଗୁରୁ ପ୍ରଫେସର ଶତ୍ରୁଘ୍ନ ନାଥ । ତାଙ୍କ ସମୟର ସେଇ ଜଣେ ମାତ୍ର ବିଲାତ ଫେରନ୍ତା ଶିକ୍ଷକ ଥିଲେ ସେ ଯେ ଇଂଲଣ୍ଡ ଯାଇ କଳା ସାହେବ ହେଇ ଫେରି ଆସିନଥିଲେ ଭାରତକୁ । ସେ ଫେରିଥିଲେ ଜଣେ ସଚ୍ଚା ଗାନ୍ଧିବାଦୀ ଶିକ୍ଷକ ରୂପରେ- ଅବିକଳ ଯେମିତି ନିଜେ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ, ବା ତାଙ୍କ ପୂର୍ବରୁ ଶ୍ରୀ ଅରବିନ୍ଦ ବିଲାତରେ ପାଠ ପଢ଼ି ଭାରତକୁ ଫେରିଥିଲେ ସାହାବ ହୋଇ ନୁହେଁ, ସଂପୂର୍ଣ୍ଣ ଭାରତୀୟ ସଂସ୍କୃତିରେ ଅନୁପ୍ରାଣିତ ଜଣେ ମୌଳିକ ବ୍ୟକ୍ତିତ୍ୱଧାରୀ ଭାବରେ ।

ପ୍ରଫେସର ଶତ୍ରୁଘ୍ନ ନାଥ ଆମ ସମୟରେ ଜଣେ ଶିକ୍ଷାଗୁରୁ ଯାହାଙ୍କୁ ପ୍ରାଚୀନ ଭାରତର ଗୁରୁକୁଳାଶ୍ରମ ମାନଙ୍କରେ ଭେଟୁ ଆମ ପୁରାଣ ପୃଷ୍ଠାରେ । କିନ୍ତୁ ସେ ଆମକୁ ପୁରାଣ ଶିକ୍ଷା ଦେଉ ନଥିଲେ; ସେ ଆମକୁ ଦେଉଥିଲେ- ଆଧୁନିକ ଯୁଗ ନିର୍ମାଣ ପାଇଁ ଆବଶ୍ୟକ ସର୍ବାଧୁନିକ ଶିକ୍ଷା । ଗୋଟିଏ ସମୟରେ ଏ ଶିକ୍ଷାକୁ କୁହାଯାଉଥିଲା- ମୌଳିକ ଶିକ୍ଷା ବା ବେସିକ୍ ଏଜୁକେଶନ୍ । ମୌଳିକ ଶିକ୍ଷାର ମୂଳନୀତି- ଆତ୍ମ ନିର୍ଭରଶୀଳତା । ଏ ଆତ୍ମନିର୍ଭରଶୀଳତାର ବ୍ୟାପ୍ତି କେବଳ ଭୌତିକ ଉନ୍ନତି ଦିଗରେ ନୁହେଁ; ଆଧି ଭୌତିକ, ଆଧି ଦୈବିକ ଓ ଆଧ୍ୟାତ୍ମିକ, ତିନି ଆୟାମକୁ (ଡାଇମେନ୍‌ସନ୍) ବ୍ୟାପ୍ତ ଥିଲା ଏ ଶିକ୍ଷାର ପ୍ରଭାବ । ଏହା ହିଁ ଥିଲା ଆମ ସମୟର ପ୍ରାଥମିକ ଶିକ୍ଷାର ମହାମନ୍ତ୍ର ଯାହା ସ୍ୱାଧୀନତା ସଂଗ୍ରାମ କାଳରେ ଦେଶର ନାଗରିକର ଚରିତ୍ର ନିର୍ମାଣ କରିଥିଲା । ଏଇ ଶିକ୍ଷା ବଳରେ ବିଦେଶୀ ଶାସନରୁ ମୁକ୍ତ କରିଥିଲୁ ଆମେ ଆମକୁ ।

କିନ୍ତୁ ହାୟ ! ଦେଶ ସ୍ୱାଧୀନ ହୋଇଯିବା ପରେ ଆମ ତଥାକଥିତ ଗଣତାନ୍ତ୍ରିକ ରାଷ୍ଟ୍ରର ଜନନେତାମାନେ ମୌଳିକ ଶିକ୍ଷାକୁ ଏକ ଗୌଣ ସ୍ଥାନକୁ ଠେଲି ଦେଇ ମାତିଗଲେ ତଥାକଥିତ ଅର୍ଥନୈତିକ ବିକାଶ ନାମରେ ବୈଷୟିକ ଶିକ୍ଷା ପ୍ରସାର କର୍ମରେ । ଚରିତ୍ର ନିର୍ମାଣ ଏକ ଅଦରକାରୀ ଅଙ୍ଗ ହୋଇପଡ଼ିଲା ପ୍ରାଥମିକ ଶିକ୍ଷାରେ । ନୀତିଶିକ୍ଷାକୁ ବର୍ଜନ କରାଗଲା- ଧର୍ମ ନିରପେକ୍ଷତା ଦ୍ୱାହିରେ । ଆରମ୍ଭ ହେଲା ଦୁର୍ନୀତିର ଯୁଗ ଭାରତ ବର୍ଷରେ । ଚାଲିଲା ରୋଜଗାର ବଢ଼େଇବା ପାଇଁ କୌଶଳ ପୂର୍ଣ୍ଣ ବ୍ୟବସାୟିକ ଆଭିମୁଖ୍ୟର ପ୍ରଚାର ପ୍ରସାର ପ୍ରତି କ୍ଷେତ୍ରରେ । ଶିକ୍ଷକମାନେ ମଧ୍ୟ ଭୁଲିଗଲେ ନିଜର ପଦ ମର୍ଯ୍ୟାଦା । ସେମାନେ ନିଜେନିଜକୁ କହିଲେ, "ଆମେ ଶିକ୍ଷକ ନହୁଁ; ଆମେମାନେ ଶିକ୍ଷାକର୍ମୀ । ଆମର ଦାବୀ ପୂରଣ କର !" ପୁଣି ଛାତ୍ରମାନେ ମଧ୍ୟ ଦାବୀକଲେ ସେମାନଙ୍କୁ ଛାତ୍ର ନକହି କରିବାକୁ "ବାଳ ଶ୍ରମିକ ବା ଶିକ୍ଷା ଶ୍ରମିକ !" ତେଣୁ ବିନା ପରୀକ୍ଷାରେ କ୍ଲାସ ପରେ କ୍ଲାସ ଉଠିବା ହେଲା ସେମାନଙ୍କର ଜନ୍ମସିଦ୍ଧ ଅଧିକାର ! ଯୋଗ୍ୟତା ଭିତ୍ତିରେ ଚାକିରିକୁ କୁହାଗଲା ଉପନିବେଶବାଦୀ ବା ସାମନ୍ତବାଦୀ ଚିନ୍ତାଧାରା । ଧୂଆଁମୂଳା ଅଧୂଆଁମୂଳାର ବାଛ ବିଚାର ଆଉ ରହିଲା ନାହିଁ ।



ଏଇ ପରିବର୍ତ୍ତିତ ପରିସ୍ଥିତିରେ ଆଜିକୁ ଷାଠିଏ ବର୍ଷ ତଳେ ଇଂଲଣ୍ଡ ଫେରନ୍ତା ଜଣେ ଯୁବ ଶିକ୍ଷକ ଶତ୍ରୁଘ୍ନ ନାଥ ସାହେବୀ ପୋଷାକ ଛାଡ଼ି ଖଦି ବସ୍ତ୍ର ପରିଧାନ କରି ଗାନ୍ଧିବାଦୀ ମୌଳିକ ଶିକ୍ଷା ପଦ୍ଧତିର ପ୍ରବର୍ତ୍ତକ ଭାବେ ଆଜୀବନ ନିଜ ଆଦର୍ଶରେ ଦୃଢ଼ ଅବିଚଳିତ ରହିବା- ଏ ଯୁଗର ଯୁବଶିକ୍ଷକଙ୍କ ପାଇଁ କେବଳ ଆଶ୍ଚର୍ଯ୍ୟଜନକ ନୁହେଁ, ଅବାନ୍ତର ମନେହେବା ସ୍ୱାଭାବିକ ହୁଏତ । ସେମାନେ ବୁଝିବାକୁ ନିଶ୍ଚୟ ଅକ୍ଷମ ହେଉଥିବେ ଯେ ଏଭଳି ଜଣେ ମଣିଷ ଏଇ ଏକବିଂଶ ଶତାବ୍ଦୀରେ ସେମାନଙ୍କ ଗହଣରେ ବଞ୍ଚିରହିଥିଲେ ଆଜି ପର୍ଯ୍ୟନ୍ତ ।

ଦିନେ ମହାତ୍ମା ଗାନ୍ଧିଙ୍କ ସଂପର୍କରେ ମଧ୍ୟ ଏହି କଥା କୁହାଯାଇଥିଲା । "ଏପରି ଦିନ ଆସିବ ଯେତେବେଳେ ଲୋକମାନେ ବିଶ୍ୱାସ ମଧ୍ୟ କରିବେ ନାହିଁ ଯେ ମହାତ୍ମା ଗାନ୍ଧି ଭଳି ଜଣେ ମଣିଷ ଏ ପୃଥିବୀ ପୃଷ୍ଠରେ ସତରେ କେବେ ଆତଯାତ ହେଉଥିଲେ ।" ଏ ବାକ୍ୟଟି ଥିଲା ବିଂଶ ଶତାବ୍ଦୀର ଚିନ୍ତା ନାୟକ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କର ।

ଆଜି ଆମ ସମୟର ଅନେକ ଲୋକ ସେହିପରି ବିଶ୍ୱାସ କରିବାକୁ ଅକ୍ଷମ ଯେ ଶତ୍ରୁଘ୍ନ ନାଥଙ୍କ ପରି ଜଣେ ଶିକ୍ଷକ ଆମର ଏଇ ଓଡ଼ିଶାରେ ଜନ୍ମ ଦେଇଥିଲେ ଓ ସେ ଆମ ଭିତରେ ଚଳପ୍ରଚଳ ମଧ୍ୟ ହେଉଥିଲେ ଆଜି ପର୍ଯ୍ୟନ୍ତ !

ସେଇ ପୁଣ୍ୟାତ୍ମା ଜାତିର ନିର୍ମାତା କୁଳଗୁରୁ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ନିର୍ବାଣ ପ୍ରାପ୍ତ ଆତ୍ମା ଉଦ୍ଦେଶ୍ୟରେ ମୋର ତଥା ଆମ ପିଢ଼ିର ସମସ୍ତ ଜୀବିତ ପୁରାତନ ଛାତ୍ରମାନଙ୍କ ପକ୍ଷରୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ପରମବ୍ରହ୍ମଙ୍କ ନିକଟରେ ପ୍ରାର୍ଥନା କରୁଛି ଯେ ଏ ଦୁର୍ବିସହ ବିଚ୍ଛେଦ ଜନିତ ଶୋକରୁ ସନ୍ତାନସନ୍ତତି ଓ ବନ୍ଧୁବର୍ଗ ନୈସର୍ଗିକ କୃପା ପ୍ରାପ୍ତ ହୋଇ ସାନ୍ତ୍ୱନା ଲାଭ କରନ୍ତୁ ।

# ଏକ ବିରଳ ବ୍ୟକ୍ତି

**ରାଖାଲ ଚନ୍ଦ୍ର ଦାସ**

ସାଧନା, ସାଧୁତା, ସରଳତା, ସତ୍‌ଚିନ୍ତା, ସୁସ୍ପଷ୍ଟ, ସୁମଧୁର ଭାଷା, ସମର୍ପଣ, ସତ୍ୟବାଦିତା, ସମ୍ବେଦନଶୀଳତା ଆଦି ଦୁର୍ଲଭ ସୁଗୁଣର ସମାହାର କ୍ୱଚିତ୍ ଆଜିର ସମାଜରେ ଦେଖାଯାଏ । ପୌରାଣିକ ଚିରତ୍ରରେ ଏହାର ଉଦାହରଣ ଅଛି । ମାତ୍ର ବିଂଶ ଶତାବ୍ଦୀରେ ଏହିପରି ଏକ ବ୍ୟକ୍ତି ଥିଲେ ଶ୍ରୀ ଶତ୍ରୁଘ୍ନ ନାଥ । ମୁଁ ତାଙ୍କର ସଙ୍ଗ ଲାଭ କରିଛି ବିଭିନ୍ନ ଅବକାଶରେ । ଯଥା ମହେନ୍ଦ୍ର ଭବନରେ "ଉତ୍କଳ ଦିବସ" ସମାରୋହ, ନରେନ୍ଦ୍ର ପ୍ରସାଦ ଦାସଙ୍କର ସ୍ମାରକୀ ବକ୍ତୃତାମାଳା ସଭା, ସ୍ୱାମୀ ରଙ୍ଗନାଥାନନ୍ଦଙ୍କର ଭଦ୍ରକ ଗସ୍ତ ଆଦି । ସରଳତା ତାଙ୍କର ଭୂଷଣ ନଥିଲା ବରଂ ଥିଲା ଜୀବନର ଏକ ଅବିଚ୍ଛେଦ୍ୟ ଧାରା । ଏକ ସାଂସ୍କୃତିକ ଆଭିଜାତ୍ୟ । ଆତିଥେୟତାରେ ଉଛୁଳି ପଡୁଥିଲା ଆତ୍ମୀୟତା ।

ଯେଉଁମାନେ ତାଙ୍କ ସହାବସ୍ଥାନ ଲାଭ କରିଥିଲେ, ତାଙ୍କୁ ଦ୍ୱିଧାହୀନ କୃତଜ୍ଞତା ପ୍ରକାଶ କରି ନିଜକୁ କୃତାର୍ଥ କରିବାର ସେ ଏକ ବିରଳ ଚରିତ୍ର । ଭଦ୍ରକ ରୋଟାରୀ କ୍ଲବ୍‌କୁ ପ୍ରାୟ ଅର୍ଦ୍ଧଲକ୍ଷ ଟଙ୍କା ଦାନ କରି ଯେଉଁ ସ୍ମୃତି ପୁରସ୍କାର ମାନ ସୃଷ୍ଟି କରି ଅଛନ୍ତି ତାହା ତାଙ୍କର ଏହି ମହାନୁଭବତାର ପ୍ରମାଣ ବହନ କରେ ।

ଭଦ୍ରକ କଲେଜକୁ ସରକାର ହାତକୁ ନେବା ପୂର୍ବରୁ ସେ ଅଧ୍ୟକ୍ଷ ଥିବା ସମୟରେ କଲେଜ ଛାତ୍ରମାନଙ୍କୁ ଫୌଜଦାରୀ ମକଦ୍ଦମାରୁ ମୁକୁଳାଇବା ପାଇଁ ନିଜେ ଜାମିନରେ ନେବାକୁ କଚେରୀ ଆସି ଛାତ୍ରବତ୍ସଳତାର ଯେଉଁ ନଜୀର ରଖିଥିଲେ ତାହା ଅବିଶ୍ୱାସ୍ୟ ହେଲେ ମଧ୍ୟ ସତ୍ୟ ।

ନାଗରିକତା, ଶିକ୍ଷକତା, ପାରିବାରିକ କର୍ମ କୁଶଳତା, ସାମାଜିକ ଦାୟବଦ୍ଧତା, ମୁକ୍ତ ଚିନ୍ତା ଆଦି ସବୁକ୍ଷେତ୍ରରେ ଥିଲେ ଏକ ଅତୁଳନୀୟ ଆଦର୍ଶ । ଏହି ଅମ୍ଳାନ ଆଦର୍ଶର ପ୍ରଦୀପ ଆମକୁ ଶୁଦ୍ଧ ଓ ଶାନ୍ତ କରୁ ।

**ମହେନ୍ଦ୍ର ଭବନ, ଭଦ୍ରକ**



# ଆଦର୍ଶ ଶିକ୍ଷକ ଶତ୍ରୁଘ୍ନ ନାଥ

**ବାସୁଦେବ ସାହୁ**

"You can preach a better sermon with your life than with your lips"- ଏହି ନିରାଟ ସତ୍ୟ ଉକ୍ତିର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଗାନ୍ଧିବାଦୀ, ସମଗ୍ର ରାଜ୍ୟରେ ସୁପରିଚିତ ପୂଜ୍ୟ ଆଦର୍ଶ ଶିକ୍ଷକ ପ୍ରଫେସର ଶତ୍ରୁଘ୍ନ ନାଥ । ୧୦-୧୧ ଦିନ ତଳେ ସେ ଆମମାନଙ୍କୁ ଶୋକାପ୍ଳୁତ କରି ଚାଲିଗଲେ ଏକ ଅଜଣା ରାଜ୍ୟକୁ, ଯେଉଁ ଅଦୃଶ୍ୟ ରାଜ୍ୟରୁ ଦିପ୍ତୀମାନ ତାରକା ଭଳି ସେ ଆମକୁ ଆଲୋକ ଦେଇ ଚାଲିଥିଲେ ସବୁଦିନ । ମାତ୍ର ୧ ମାସ ତଳେ ତାଙ୍କର ୯୧ତମ ଜନ୍ମ ଦିବସ ଆମେ ପାଳନ କରିଥିଲୁ । ଏହି ପରିଣତ ବୟସରେ ମଧ ସେ ଆମ ଗହଣକୁ ଆସି ତାଙ୍କର ଆଶୀର୍ବାଦ ଦେଇଗଲେ । ହାତର ଇଙ୍ଗିତରେ, ସମ୍ବେଦନଶୀଳ ଓ ପ୍ରେମାପ୍ଳୁତ ଚାହାଣୀରେ ମଣିଷକୁ ମଣିଷ ଯେ ଏତେ ଭଲ ପାଏ ତାହାର ଚରମ ଦୃଷ୍ଟାନ୍ତ ଥିଲେ ପ୍ରଫେସର ନାଥ । ପ୍ରଫେସର ନାଥଙ୍କ ଜୀବନ ଥିଲା ଉଚ୍ଚ ଆଦର୍ଶର । ଜ୍ଞାନକର୍ମ, ଭକ୍ତିପ୍ରେମର ସେ ଥିଲେ ଏକ ମଧୁମୟ ସମାହାର । ତାଙ୍କ ସଂସ୍ପର୍ଶରେ ଯିଏ ଆସୁଥିଲେ ସେ ଅଭିଭୂତ ହୋଇଯାଉଥିଲେ । ତାଙ୍କ ପ୍ରାଣରେ ଏକ ଅବ୍ୟକ୍ତ ଭାବ ଜାତ ହେଉଥିଲା । ସେ ଭାବ ପ୍ରେରଣା ଦେଉଥିଲା ନିଷ୍କାମ କର୍ମ କରିବାକୁ, ଉତ୍ତମ ଚିନ୍ତା କରିବାକୁ, ସମାଜ ଓ ଦେଶର ମଙ୍ଗଳ ସାଧନ କରି ଜୀବନକୁ ଶୁଦ୍ଧ ଓ ସମୃଦ୍ଧ କରିବାକୁ ।

ପ୍ରଫେସର ନାଥଙ୍କ ଜୀବନ ଦର୍ଶନ ଥିଲା 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ' । ନିରାକାର ବ୍ରହ୍ମର ସତ୍ତା ରୂପେ ପ୍ରତ୍ୟେକ ମଣିଷ ଏକ ନୈସର୍ଗିକ ଶକ୍ତିର ଅଧିକାରୀ । ସେ ଶକ୍ତିକୁ ପ୍ରସ୍ଫୁଟିତ, ପ୍ରକାଶିତ କରିବା ପାଇଁ ସଦା ଉଦ୍ୟମ ହେବା ଦରକାର । ପ୍ରତ୍ୟେକ ଶିଶୁଠାରେ ଲୁକ୍କାୟିତ ଅଛି ମହାନ୍ ସମ୍ଭାବନା । ସେହି ସମ୍ଭାବନାକୁ ରୂପାୟିତ କରିବା ପାଇଁ ପ୍ରଫେସର ନାଥ ତାଙ୍କର ଛାତ୍ର ଅନୁଗାମୀ ବନ୍ଧୁ ସମସ୍ତଙ୍କୁ ଉଦ୍‌ବୋଧନ ଦେଉଥିଲେ । ସେ ଯେପରି ଜଣେ ପରିଚ୍ଛନ୍ନ ପ୍ରଜ୍ଞାଦୀପ୍ତ, ଶ୍ରଦ୍ଧାଶୀଳ ମଣିଷ ଥିଲେ ତାଙ୍କର ଭାଷା ଥିଲା ସେହିପରି ଶୁଦ୍ଧ, ପରିମାର୍ଜିତ, ସରଳ, ହୃଦୟସ୍ପର୍ଶୀ । ଶିକ୍ଷା, ଧର୍ମ, ସମାଜ ସଂସ୍କାର ଉପରେ ସେ ବହୁ ଗ୍ରନ୍ଥ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ସଂଗେସଂଗେ ଓଡ଼ିଶାବାସୀଙ୍କୁ ସତ୍‌ମାର୍ଗ ଦର୍ଶାଇ ଯାଇଛନ୍ତି । ଛାତ୍ରଛାତ୍ରୀମାନଙ୍କୁ, ତରୁଣତରୁଣୀମାନଙ୍କୁ 'ବାପାରେ-ମାଆରେ' ସମ୍ବୋଧନ କରି ପ୍ରଥମ ସାକ୍ଷାତରେ ସେ ଆପଣାର କରି ନେଉଥିଲେ । ମୋର ମନେହୁଏ ତାଙ୍କ ଭଳି ଛାତ୍ରବତ୍ସଳ ଶିକ୍ଷକ ସମଗ୍ର ଦେଶରେ ଥିଲେ ବିରଳ । ଜ୍ଞାନ ସହ, ବିଦ୍ୟା ଆହରଣ ସହ ଶ୍ରମ ପ୍ରତି ସ୍ପୃହା ସୃଷ୍ଟି କରିବା ପାଇଁ ସମଗ୍ର ରାଜ୍ୟରେ ତାଙ୍କର ପ୍ରଚେଷ୍ଟା ଥିଲା ଅଦ୍ୱିତୀୟ । ଶିକ୍ଷକର ଆଦର୍ଶକୁ ଭୁଲିଯାଉଥିବା ଶିକ୍ଷକଗୋଷ୍ଠୀ, ସମାଜସେବା ପ୍ରତି ଉତ୍ସର୍ଗୀତ ପ୍ରଫେସର ନାଥଙ୍କ ଜୀବନଚର୍ଯ୍ୟାରୁ କିଛିଟା ଶିଖିବେ ବୋଲି ଆଶା ।

# A note of grief

**Umakanta Jena**

I have expressed my heart rendering grief at the sad demise of my father-like-teacher and most beloved person Satrughna Nath. His multi-dimensional towering personality, ambitious attitude, pleasing expression and epitome of social, cultural, educational, synthesys, left an indelible print in the core of my heart. I express my brief condolence to the bereaved family for the irrepairable loss. I pray God to strengthen the hands of Dr. Rabindra Nath, the worthy son of a worthy father, who will breeze out the void created by his father.



# ଅମ୍ଳାନ ଶତ୍ରୁଘ୍ନ ପ୍ରତିଭା

**ବୀରେନ୍ଦ୍ର କୁମାର ପଣ୍ଡା**

ଜନ୍ମ-ମୃତ୍ୟୁର ପରିସର ହିଁ ଜୀବନ । ଏହି କ୍ଷୁଦ୍ର ପରିସରକୁ ସର୍ବାନ୍ତଃକରଣରେ ସାଫଲ୍ୟମଣ୍ଡିତ କରିବାର କଳା ବିରଳ ବ୍ୟକ୍ତିଙ୍କଠାରେ ଦେଖାଯାଏ । ଜନ୍ମ ପରେ ମୃତ୍ୟୁ ସ୍ୱାଭାବିକ । ମୃତ୍ୟୁ ଅନିର୍ବାର୍ଯ୍ୟ, ଅଲଘଂନୀୟ । ତଥାପି ବ୍ୟକ୍ତି ବଞ୍ଚିବା ମଧରେ କାର୍ଯ୍ୟଶୈଳୀ ମାଧ୍ୟମରେ ମୃତ୍ୟୁଞ୍ଜୟ ହୋଇ ଯାଆନ୍ତି । ପରିପକ୍ୱ, ପୁଷ୍ଟିବର୍ଦ୍ଧନ, ଉର୍ବାରୁକ ଯେପରି ବୃନ୍ତଚ୍ୟୁତ ହୋଇ ସାର୍ବଜନୀନ ହୋଇଯାଏ, ଠିକ୍ ସେହିପରି ମାନବର ମାନବିକତା କଳାକୁ ଜାଣିଥିବା ବ୍ୟକ୍ତି ମୃତ୍ୟୁ ଉତ୍ତୋରଣ ହୋଇ ଅମୃତର ଆସ୍ୱାଦନ କରେ । ସେହି ମରଣଧର୍ମା ବ୍ୟକ୍ତିମାନେ ଭୌତିକ ଶରୀର ତ୍ୟାଗ କଲେ ବି ଲୌକିକ ଜଗତରେ ସଦା ଅବସ୍ଥାନ କରିଥାଆନ୍ତି । ଏଥିପାଇଁ ବୈଦିକ ପାରସ୍କର ଗୃହସୂତ୍ର ରେ ବିଚାର ଆସେ-

**ଜନ୍ମ ପରେ ମୃତ୍ୟୁ ସ୍ୱାଭାବିକ । ମୃତ୍ୟୁ ଅନିର୍ବାର୍ଯ୍ୟ, ଅଲଘଂନୀୟ । ତଥାପି ବ୍ୟକ୍ତି ବଞ୍ଚିବା ମଧରେ କାର୍ଯ୍ୟଶୈଳୀ ମାଧମରେ ମୃତ୍ୟୁଞ୍ଜୟ ହୋଇ ଯାଆନ୍ତି । ପରିପକ୍ୱ, ପୁଷ୍ଟିବର୍ଦ୍ଧନ, ଉର୍ବାରୁକ ଯେପରି ବୃନ୍ତଚ୍ୟୁତ ହୋଇ ସାର୍ବଜନୀତ ହୋଇଯାଏ, ଠିକ୍ ସେହିପରି ମାନବର ମାନବିକତା କଳାକୁ ଜାଣିଥିବା ବ୍ୟକ୍ତି ମୃତ୍ୟୁ ଉତ୍ତୋରଣ ହୋଇ ଅମୃତର ଆସ୍ୱାଦନ କରେ ।**

"ଅପୈତୁ ମୃତ୍ୟୁଃ ଅମୃତଂମ ଆଗାଦ୍ ବୈବସ୍ୱତୋ ନୋ ଅଭୟଂ କୃଣୋତୁ"

ମୃତ୍ୟୁ ଦୂର ହେଉ । ଅମୃତର ବର୍ଷଣ ସନ୍ନିକଟ ହେଉ । ଅମୂଲ୍ୟ ବିଚାର ସମସ୍ତଙ୍କ ସହାବସ୍ଥାନ ମନ୍ତରେ ବଞ୍ଚିବାର କଳା ହେଉ ।

ଏପରି ଏକ ପବିତ୍ର ଆତ୍ମାର (ଶତ୍ରୁଘ୍ନ ନାଥ) ଶରୀର ସଂଯୋଗ ହୋଇଥିଲା ଭଦ୍ରକ ଜିଲ୍ଲାର ଉତ୍ତରବାହିନୀରେ । ସେହି ଆତ୍ମା ଶରୀର ବିଯୋଗ କରିଲା ମାର୍ଚ୍ଚ ୧୦ ରାତ୍ର ଏଗାର ଘଟିକାରେ । ୯୧ ବର୍ଷର ଜୀବନରେ ସେ ଶତଶତ ଯଶୋନିଧିମାନଙ୍କରେ ମୁକୁଟ ସ୍ପର୍ଶ କରିବାରେ ସମର୍ଥ ହୋଇଥିଲେ । ୧୯୧୫ ମସିହା ଫେବୃୟାରୀ ୧ରୁ ୨୦୦୬ ମାର୍ଚ୍ଚ ୧୦ ଏକ ଦୀର୍ଘ ପଥ । ସେହି ଦୀର୍ଘ ପଥରେ ସେ ପ୍ରତି ସ୍ଥାନରେ ନିଜର ପ୍ରତିଭାପୂର୍ଣ୍ଣ ଜୀବନର ସ୍ମୃତିରେଖା ଆଙ୍କି ଦେଇଛନ୍ତି । ସେ ଗ୍ରାମ ଚଟଶାଳୀରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ସମାପ୍ତ କରି ନିଜେ ଅଧ୍ୟୟନ କରିବା ସହ ଅନେକଙ୍କୁ ଅଧ୍ୟାପନା ଦେଇଛନ୍ତି । ଜୀବନର ସମସ୍ତ ବିଦ୍ୟାକୁ ଅନ୍ୟକୁ ବିତରଣ କରିବା ସହ ଆଗାମୀ ବଂଶଧରଙ୍କୁ ଉଦ୍‌ବୁଦ୍ଧ କରାଇବା ପାଇଁ ୪୦ରୁ ଊର୍ଦ୍ଧ୍ୱ ପୁସ୍ତକ ଓ ଅନେକ ପାଠ୍ୟ ପୁସ୍ତକ ରଚନା କରିଛନ୍ତି । ମହିମା ଧର୍ମର ବିଚାରପ୍ରତି ଅନୁପ୍ରାଣିତ ହୋଇଥିଲେ ମଧ ବିଚାର ପ୍ରଦାନ ସମୟରେ ଧର୍ମର ମସିହାଙ୍କୁ ଯଥାଯଥ ପ୍ରତିପାଦନ କରିଛନ୍ତି । ଅନେକ କର୍ମରେ କର୍ମଠ, କର୍ମକୁଶଳ ଶତ୍ରୁଘ୍ନ ନାଥ ସତେ ଯେପରି ଅନେକଙ୍କ ନାଥ (ରକ୍ଷକ) ଭାବେ ହୃଦୟରେ ଅବସ୍ଥାନ କରିଛନ୍ତି ।

ବୈଦିକ ବିଚାରପୂର୍ଣ୍ଣ ପାରସ୍କର ଗୃହୀସୂତ୍ରରେ ଏକ ବିଚାର ଆସେ-

ପରଂ ମୃତ୍ୟୋଃ ଅନୁପରେହି ପନ୍ଥାଂ ଯତ୍ର ନୋ ଅନ୍ୟ ଇତିରୋ ବେଦଯାନାଦ୍ ।

ଚକ୍ଷୁଷ୍ମତେ ଶୃଣ୍ୱତେ ତେ ବ୍ରବୀମି ମା ନଃ ପ୍ରଜାଂ ରୀରିଷୋ ମୋତ ବୀରାନ୍ ॥

ମୃତ୍ୟୁ ନିଶ୍ଚିତ । ମାତ୍ର ମୃତ୍ୟୁଧାରୀ ଶରୀରର ଗୁଣାତୀତ କାର୍ଯ୍ୟଧାରା ଅନ୍ୟ ଅନୁଗାମୀମାନଙ୍କ ପାଇଁ ମାର୍ଗଦର୍ଶକ ହେଉ । ଅନ୍ୟ ଦେବମାର୍ଗଗାମୀ ଗତ୍ୱା ସେହି ପ୍ରତିଭାର ଅନ୍ୱେଷଣ କରି ସଫଳ ହୁଅନ୍ତୁ । ହେ ଚକ୍ଷୁଷ୍ମାନ୍ ଗଣ ! ଦେଖ, ହେ ଶ୍ରୋତଧାରୀ ଗଣ ! ଶୁଣ, ମୁଁ ଯାହା କହୁଛି ବା ଯାହା କରିଛି ତାହା ଜଣେ ସଫଳ ଓ ସାର୍ଥକ ମନୁଷ୍ୟ ଦ୍ୱାରା ସମ୍ଭବ । ତୁମମାନଙ୍କ ମଧରେ ବି ସେହି ସଫଳତା ତଥା ସେପରି କାର୍ଯ୍ୟକରିବାର ଦକ୍ଷତା ଅଛି । ତାକୁ କାର୍ଯ୍ୟରେ ପ୍ରୟୋଗ କର ଓ ଜୀବନର ପ୍ରତିକ୍ଷଣକୁ ସାଫଲ୍ୟମଣ୍ଡିତ କରି ସଫଳ ହୁଅ ।

ଅନେକ ପ୍ରେରଣାପ୍ରଦ କାର୍ଯ୍ୟ ସେ ଆମମାନଙ୍କ ପାଇଁ କରିଛନ୍ତି । ଆମେ ସେହି ମାର୍ଗାନୁଗାମୀ ହେଲେ ସେ ଆମମାନଙ୍କଠାରେ ଚିରସ୍ମରଣୀୟ ରହିବେ । ଶରୀର ବିନାଶଶୀଳ ମାତ୍ର ଶରୀରଧାରୀର ପ୍ରତିଭାମୟ କାର୍ଯ୍ୟ ସଦା ବିକାଶ ପ୍ରେରକ ହୋଇଥାଏ ।

**ବେଦଭବନ, କୁଆଁସ, ଭଦ୍ରକ**



# ପ୍ରତିଭାଦୀପ୍ତ ସର୍ବପ୍ରିୟ ମଣିଷଟିଏ

**ଅଧ୍ୟାପକ କରୁଣାକର ପରିଡ଼ା**

ପ୍ରଫେସର ଶତ୍ରୁଘ୍ନ ନାଥ । ଓଡ଼ିଶାର କୋଣେ ଅନୁକୋଣରେ ସେଏକ ମୂର୍ତ୍ତିମନ୍ତ ମଣିଷ ! ଜୀବନ ତାଙ୍କର ବେଶ ଲମ୍ବା । ଦେଶ, ବିଦେଶର ବିଭିନ୍ନ ଆଡ଼ର ବହୁ ମଣିଷଙ୍କ ସହିତ ଭେଟଭାଟ । ଜୀବନ ତାଙ୍କରକ ଅସୁମାରୀ ଘଟଣାରଏକ ଚଳନ୍ତ ପ୍ରବାହ । ଆଦର୍ଶବାଦୀ, କର୍ତ୍ତବ୍ୟନିଷ୍ଠ, ଶୃଙ୍ଖଳିତ, ଛାତ୍ରବତ୍ସଳ ଭାବରେ ସେ ଜଣେ ଅତୁଳନୀୟ ଶିକ୍ଷକ । ତାଙ୍କର ଅତି ସରଳିଆ ଚେହେରା ଦେଖିଲେ, କାହାରି ସହଜରେ ବିଶ୍ୱାସ ହୁଏ ନାହିଁ- ସେ ଏତେ ବିରାଟ ପ୍ରତିଭାର ଅଧିକାରୀ । ତାଙ୍କ ପ୍ରତିଭାର ବ୍ୟାପ୍ତି ଭଦ୍ରଖର ସାଳନ୍ଦୀକୂଳିଆ ସହର ତଳି ଗାଁ ଉତ୍ତରବାହିନୀରୁ ଲଣ୍ଡନ ଯାଏ । ଦୀର୍ଘ ଏକା ନବେ ବର୍ଷ ଧରି, ସେ ଏକ ଅବାରିତ ଓ ଅସରନ୍ତି ଅନୁଭୂତିମାଳାର ଜୀବନସ୍ରୋତ । ପେଷାରେ ସେ ଜଣେ ସ୍କୁଲ-କଲେଜ ଶିକ୍ଷକ । ହେଲେ, ମହାତ୍ମାଗାନ୍ଧୀ ଏବଂ ସନ୍ଥ ଭୀମ ଭୋଇ- ଏଇ ଦୁଇଜଣଙ୍କ ମାହାତ୍ମ୍ୟରେ ଶତ୍ରୁଘ୍ନ ନାଥଙ୍କ ଜୀବନ ଗଢ଼ା । ସେ ଗାନ୍ଧି-ବିନୋବା ଯୁଗର ତପସିଦ୍ଧ କର୍ମଯୋଗୀ । ଶତ୍ରୁଘ୍ନ ନାଥ ଜଣେ କଥା ସମ୍ରାଟ । କଥାକଥାକେ ତାଙ୍କ ପାଟିରୁ ବାହାରେ 'ବାପା' ସମ୍ବୋଧନ । ତାଙ୍କ କଥାରେ କୁହୁକ ଥାଏ । ସେ କଥାସବୁ ନିମିଷକେ ଶ୍ରୋତାର ମନକୁ ଘେନେ । ଶିକ୍ଷାଲାଭ କାଳରେ ଜୀବନର ସବୁ ସ୍ତରରେ ତାଙ୍କର ଅତି ଚମତ୍କାର କୃତିତ୍ୱ । ସବୁଠି ବିଶିଷ୍ଟ କୃତୀ ଛାତ୍ର । ପଦବୀରେ ପ୍ରଫେସର । ଆଚରଣ କି ଉଚ୍ଚାରଣରେ କେହି କେବେ ହେଲେ, ସାମାନ୍ୟତମ ଗର୍ବ କି ଅଭିମାନ ଅନୁଭବ କରି ନାହାନ୍ତି । ତାଙ୍କର ସୌଜନ୍ୟ, ଆତିଥ୍ୟ, ସରଳ ଜୀବନଯାପନ ପ୍ରଣାଳୀ, ତାଙ୍କ ସଂସ୍ପର୍ଶରେ ଯେ କ୍ଷଣେ ଆସିଛି, ସେ ଦେଖିଛି ।

ଜୀବନ ଆରମ୍ଭ ଜଣେ ସାଧାରଣ ସ୍କୁଲ ଶିକ୍ଷକ ଭାବରେ । ପ୍ରତିଭା ବଳରେ ବିଭିନ୍ନ ପାହାଚ ଡେଇଁ, ଜଣେ ଖ୍ୟାତନମା ଶିକ୍ଷାବିତ୍ ଭାବରେ ତାଙ୍କ ନାଁ ଦେଶର ଶିକ୍ଷା-ଜଗତରେ ଖ୍ୟାତ । ବିଭିନ୍ନ ବିଭାଗର ସାରସ୍ୱତ ସାଧନାରେ, ସେ ଜଣେ ପ୍ରବାଦପୁରୁଷ । ପିଲାଙ୍କ ପାଠ୍ୟପୁସ୍ତକରୁ ଆରମ୍ଭ କରି, ଶିଶୁ ସାହିତ୍ୟ, ଭ୍ରମଣ କାହାଣୀ, ପ୍ରୌଢ଼ଶିକ୍ଷା ସହାୟକ ସାହିତ୍ୟ, ଧର୍ମ-ଦର୍ଶନ ସମ୍ବଳିତ ଅତି ଉପାଦେୟ ପୁସ୍ତକ, ଶିକ୍ଷା ସମ୍ବଳିତ ଅଶେଷ ଚିନ୍ତା ଚେତନାର ଲେଖା, ଚିନ୍ତା ମୂଳକ ପ୍ରବନ୍ଧ ରଚନା ପ୍ରଭୃତି ତାଙ୍କ ବହୁଳ ସାରସ୍ୱତ ସାଧନାର ଅନ୍ତର୍ଭୁକ୍ତ । ସେ ସମସ୍ତ ଆମ ସାହିତ୍ୟ ସମ୍ଭାରରେ ଅମୂଲ୍ୟ ଗନ୍ତାଘର ।

୧୯୪୩-୧୯୪୬ରେ ମୁଁ କଲେଜିଏଟ୍ ସ୍କୁଲରେ ତାଙ୍କର ଜଣେ ଯୁଗ୍ମ ଛାତ୍ର । ତାଙ୍କ ବ୍ୟକ୍ତିତ୍ୱ ଉପରୋକ୍ତ ପରିଚୟ ମୋର ଅହେତୁକ ପ୍ରଶଂସା ନୁହେଁ । ଇଏ ଏକ ସାର୍ବଜନୀନ ଧ୍ୱନିର ପ୍ରତିଧ୍ୱନି ମାତ୍ର । ୧୯୪୨ରେ ନାଥ ସାର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଯୋଗଦାନ କରିଥିଲେ । ତାଙ୍କ ଯୋଗଦାନ ମୁହୂର୍ତ୍ତରେ ଏମିତିଆ କଥା ବେଶ୍ କିଛିଦିନ ସ୍କୁଲରେ ଗଡ଼ିଗଡ଼ି ଚାଲିଥିଲା । ୧୯୪୨ ଦ୍ୱିତୀୟ ବିଶ୍ୱଯୁଦ୍ଧର ବେଳ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର ଶେଷ ଡାକରା "କର ବା ମର" ଏଇ ୧୯୪୨ରେ ଦିଆଯାଇଥିଲା । ସଭା ସମିତି, ସ୍ଲୋଗାନ୍ ସହ ଶୋଭାଯାତ୍ରାରେ କଟକ ସହର ସେତେବେଳେ ମୁଖରିତ । କଲେଜିଏଟ୍ ସ୍କୁଲର କଡ଼ରେ ସବୁ କୋର୍ଟ, କଚେରୀ, ସ୍କୁଲ ସମୟରେ ବାହାରେ ଶୋଭାଯାତ୍ରାର ବୁକୁଫଟା କୁହାଟ ଚାଲିଥାଏ । ଝରକାବାଟେ ପିଲାଏ ବାହାରକୁ ଚାହିଁଥାନ୍ତି । ଠିକ୍ ସମୟ ଧରି ନୂଆ ଶିକ୍ଷକ ଶତ୍ରୁଘ୍ନ ନାଥ ଶ୍ରେଣୀଗୃହ ଭିତରକୁ ପଶି ଆସିଲେ । ମନିଟର ଦେଖି ଦେଇ, ନିର୍ଦ୍ଦେଶ ଦେଲା "ନୂଆ ସାର, ସମସ୍ତେ ଠିଆ ହୁଅ ।" ପରିଷ୍କାର ଧଳା ଦାନ୍ତର ମନଖୋଲା ହସ ସମସ୍ତଙ୍କୁ ମୁଗ୍ଧ କଲା । ବସି ପଡ଼ । ଆମେସବୁ ଆଶ୍ଚର୍ଯ୍ୟ ! କୌଣସି ସାର୍ କେବେ ଆମ ଆଡ଼କୁ ଚାହିଁ ହସିବାର ଆମେ କେବେ ଦେଖିନାହୁଁ । ଦେଖିଛୁ ଗୁରୁଗମ୍ଭୀର ମୁହଁ, ଶୁଣିଛୁ କର୍କଶ ଶବ୍ଦଗୁଚ୍ଛ- "ଷ୍ଟାଣ୍ଡ ଅପ୍ ଅନ ଦି ବେଞ୍ଚ୍", "ସିଟ୍ ଡାଉନ୍" । କିନ୍ତୁ ସେଦିନ ନାଥସାର୍ ଦୁଇହାତ ଯୋଡ଼ି, ଶ୍ରେଣୀକୁ ନମସ୍କାର ବସ କରିଥିଲେ- "ନମସ୍କାର, ମୁଁ ଶତ୍ରୁଘ୍ନ ନାଥ, ତମର ନୂଆ ଇଂରାଜୀ ଶିକ୍ଷକ" । ପୂରା ବିଶ୍ୱାସ ନ ଆସିଲେ ବି ଆଥା-ମାମା ହୋଇ ସମସ୍ତଙ୍କ ପାଟିରୁ ଏକସଙ୍ଗେ ବାହାରି ଆସିଲା, "ସାର୍, ନମସ୍କାର ।" ... ଏତେ କମ୍ ବୟସ ! କେତେ ଶାନ୍ତ ଶିଷ୍ଟ !! ଅସମ୍ଭବ ଭାବରେ ଭଦ୍ର ବ୍ୟବହାର... ସେ କ'ଣ ଆମକୁ ପଢ଼େଇବେ ?..

ବିଭିନ୍ନ ସମୟରେ ଶତ୍ରୁଘ୍ନ ବାବୁ, ସରକାରୀ କାର୍ଯ୍ୟାନୁଷ୍ଠାନର ଧାରାରେ କଲେଜିଏଟ୍ ସ୍କୁଲ ଶିକ୍ଷକରୁ ରାଧାନାଥ ଟ୍ରେନିଂ କଲେଜର ଅଧକ୍ଷ ହେବାଯାଏଁ, ବିଭିନ୍ନ ପଦପଦବୀରେ କାମ କରିଥିଲେ । ମଝିରେ ୧୯୫୧ଠାରୁ ରାଜ୍ୟରେ ମୌଳିକ ଶିକ୍ଷାର ପ୍ରସାର ପାଇଁ, ଅନୁଗୋଳଠାରେ ବେସିକ୍ ଟ୍ରେନିଂ କଲେଜର ଅଧକ୍ଷ ପଦରେ ନିଯୁକ୍ତି ପାଇଥିଲେ । ତାଙ୍କର ଏଇ ନୂତନ ନିଯୁକ୍ତିର ଚମତ୍କାର ଭାବେ କାର୍ଯ୍ୟ



ସେ ସମ୍ପାଦନ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଭାଷା ଅନୁସାରେ, ସବୁକାମ ସମାନ- ଶିକ୍ଷକର ପାଠଦାନ, ମେହେନ୍ତରର ମଇଳା ସଫେଇ,ମାଳିର ବଗିଚାକାମ, ଚଷାର ଚଷକାମ, ଓକିଲର ଓକିଲାତି ପ୍ରଭୃତି ସବୁତ ଗୋଟିଏ ଗୋଟିଏ କାମ । କାମ ତ କାମ; ଏଥିରେ ଛୋଟ ବଡ଼ କିଛି ନାହିଁ । ଯେକୌଣସି କାମ କରିବାରେ କିଛିହେଲେ ଫରକ୍ ନାହିଁ, ନିଜେ ସବୁ କର, ଶିକ୍ଷାର୍ଥୀମାନଙ୍କୁ ଦେଖାଇ ଦେଇଥିଲେ । ସବୁକାମରେ ପ୍ରତ୍ୟେକ ଶିକ୍ଷାର୍ଥୀଙ୍କୁ ମଣେଇ ନେଇଥିଲେ । ମୌଳିକ ଶିକ୍ଷା କାଳକ୍ରମେ ଓଡ଼ିଶାର ଶିକ୍ଷା-ଜଗତର କୁଆଡ଼େ ମିଳେଇ ଗଲାଣି । ହେଲେ, ପ୍ରଫେସର ନାଥ ବିଶ୍ୱବିଦ୍ୟାଳୟର ଉପାଧିଧାରୀ ପୁଅଝିଅମାନଙ୍କୁ ବିନା ଦ୍ୱିଧାରେ ଝାଡୁ ଧରାଇ ଦେଲେ, ଝୁଡ଼ି, କୋଡ଼ି, କୋଦାଳ କାମ ଶିଖେଇ ଥିଲେ ସୂତାକଟା, ଲୁଗାବୁଣା ।

ଶତ୍ରୁଘ୍ନ ନାଥଙ୍କ ପିତାମାତା ଉଭୟ ଥିଲେ ମହିମାଧର୍ମୀ । ମହିମାଧର୍ମୀର ମୂଳମନ୍ତ୍ର, ସେ ତାଙ୍କ ପରିବାର ବିଦ୍ୟାଳୟରୁ ଶିକ୍ଷାଲାଭ କରିଥିଲେ । ମୂଳରୁ 'ଶତ' (ନାଥସାର୍‌ଙ୍କ ପିଲାଦିନ ନାମ) ଜୀବନରେ ହେଲେ ମହିମା ଦୀକ୍ଷିତ । ଖୁବ୍ କଠୋର ସେ ଦୀକ୍ଷା । ରାତି ଥାଇ ଅତି ପାହାନ୍ତାରୁ ଶେଯ ଛାଡ଼ି, ଉଠିବାକୁ ହେବ । ସଙ୍ଗେସଙ୍ଗେ ନିତ୍ୟକର୍ମ, ସ୍ନାନ ପ୍ରକାର ସାରିଦେବା ଏକ ବିଧି । ସୂର୍ଯ୍ୟୋଦୟ ପୂର୍ବରୁ, ଶୂନ୍ୟ ଆକାଶତଳେ ନିଜକୁ ସମର୍ପଣ କରିଦେବାକୁ ହେବ । ପରିଧାନ ମାଟିଆ ବସ୍ତ୍ର । ପ୍ରାର୍ଥନା-ବିଭୂନାମ ସ୍ମରଣ ପ୍ରତ୍ୟହ ସୂର୍ଯ୍ୟୋଦୟ ପୂର୍ବରୁ ନିଶ୍ଚିତ କର୍ମ । ସୂର୍ଯ୍ୟାସ୍ତ ପରେ ଭୋଜନ ପୂରା ନିଶିଦ୍ଧ । ଏସବୁ କଷ୍ଟ ହେଲେ ବି, ଶତ୍ରୁଘ୍ନ ବାବୁ ତାଙ୍କ ଜୀବନର ଅଭ୍ୟାସରେ ପକେଇ ଥିଲେ । ଅଭ୍ୟାସ ମଣିଷର ଦ୍ୱିତୀୟ ପ୍ରକୃତି । ଏଇ ଧାରା ପ୍ରଫେସର ନାଥଙ୍କର ଜୀବନର ଶେଷ ପର୍ଯ୍ୟନ୍ତ ଚାଲିଥିଲା ।

ଶତ୍ରୁଘ୍ନ ନାଥଙ୍କର ବାପ-ମା', 'ଶତ'ଙ୍କ ପୂର୍ବରୁ ପାଞ୍ଚଗୋଟି ସନ୍ତାନ ଲାଭ କରିଥିଲେ । ସେମାନେ ଆଉ ଏକ ସନ୍ତାନ ଚାହୁଁ ନଥିଲେ । ଷଷ୍ଠ ସନ୍ତାନ ଜନନୀ ଗର୍ଭରୁ ବାହାରି, ଧରଣୀ ସ୍ପର୍ଶ ନକରିବା ପାଇଁ, ସେମାନେ ପ୍ରାଣପଣେ ଚେଷ୍ଟା କରିଥିଲେ । ବିଧିର ବିଧାନ ଅଲଘନୀୟ । ସେମାନଙ୍କର ସମସ୍ତ ଅପଚେଷ୍ଟା ବିଫଳ ହେଲା । ଏକ ଅଲୋଡ଼ା ସନ୍ତାନ ଭାବେ 'ଶତ' ଜନ୍ମଲାଭ କରି ଏ ଧରଣୀ ଛୁଇଁଲା । ଦୀର୍ଘ ଏକାନବେ ବର୍ଷ ଆମର ଏ ଦୁନିଆରେ ସେ ଜୀଇ ରହି, ଜଣେ ପ୍ରତିଭାଧର ମଣିଷର ଅଲୌକିକ ମହାନତାରେ, ସ୍ୱଚ୍ଛ ମଣିଷପଣିଆରେ ଉଦ୍‌ଭାସିତ ହୋଇ, ଏଇ ଗଲା ମାର୍ଚ୍ଚ ୧୦ତାରିଖ ଶୁକ୍ରବାର ରାତି ଏଗାରଟା ତିରିଶ ମିନିଟ୍ ଯାଏ ଚାଲିଥିଲା । କାଲିପରି, ସେଦିନ ତାଙ୍କ ଚିତାର ଜେଲିହାନ ଶିଖାକୁ ବିକଳରେ ଚାହିଁ ରହିଥିଲାବେଳେ, ଉତ୍କଳ ଗୌରବଙ୍କର ଅମରବାଣୀ ମନେମନେ ପଇଟେଇ ହେଇ ଯାଉଥିଲା-

"କୋଟିଏ ସନ୍ତାନ ମା' ଗୋ ଧରିଅଛୁ କୋଳେ,<br>ଗୋଟିଏ ମନୁଷ୍ୟ କାହିଁ ନଦେଖିଲି ଡୋଳେ !!"

ସେଦିନର ନବଜାତକ 'ଶତ'ଟି 'ପ୍ରଫେସର ଶତ୍ରୁଘ୍ନ ନାଥ' ହେଲାବେଳକୁ ଓଡ଼ିଆ ପ୍ରାଣ ମଧୁସୂଦନ ଦାସ ଜୀବନରେ ନଥିଲେ ।

**୧୬୫, ଷ୍ଟେସନ ସ୍କୋୟାର, ୟୁନିଟ୍-୩**
**ଭୁବନେଶ୍ୱର-୧**



ବୋହୂ ଗୀତାଞ୍ଜଳି ଓ ନାତି ସାନୁ ସହିତ ପ୍ରଫେସର ନାଥ



# ସେ ଜଣେ ଭଲ ମଣିଷ ଥିଲେ

**ନୃସିଂହ ଚରଣ ପଣ୍ଡା**

ପ୍ରଫେସର ଶତ୍ରୁଘ୍ନ ନାଥ ମୋର ପଡ଼ୋଶୀ । ତାଙ୍କୁ ମୁଁ ଦୂରରୁ ଦେଖିଛି, ପାଖରୁ ଦେଖିଛି, ଅତି ପାଖରୁ । ସେ କେବଳ ଜ୍ଞାନବାନ୍ ନଥିଲେ, ପ୍ରଜ୍ଞାବାନ୍ ଥିଲେ । ମାନବୀୟତା ତାଙ୍କର ଆତ୍ମାର ଆଭୂଷଣ ଥିଲା । ଜଣେ ମହାପୁରୁଷଙ୍କର ମହାପ୍ରୟାଣ ଘଟିଲା । ଏହା ଓଡ଼ିଶା ପାଇଁ, ମୋ ପରିବାର ପାଇଁ ଏବଂ ମୋ ପାଇଁ ଅତିମାତ୍ରାରେ ଦୁଃଖଦ ।

ବାପା-ମା' ରାମାୟଣରୁ ନାମଟିଏ ବାଛି ସାରଙ୍କର ନାମକରଣ କରିଥିଲେ । ନାମଟି ଭୁଲ୍ ବୋଲି ପ୍ରମାଣିତ ହେଲା । ସେ ଅଜାତଶତ୍ରୁ ଥିଲେ । ପିଲାଠାରୁ ବୁଢ଼ାଯାଏ ସମସ୍ତେ ତାଙ୍କର ମିତ୍ର । ତାଙ୍କର ଜୀବନରେ ତାଙ୍କର କୈହି ଶତ୍ରୁ ନଥିଲେ । ସେ ଶତ୍ରୁଘ୍ନ ହୋଇ ପାରିଲେ ନାହିଁ ।

ସାର୍ ମୋର ପୂର୍ବ ପିଢ଼ିର ଲୋକ । ସେ ମୋ'ଠାରୁ ଚଉଦ ବର୍ଷରେ ବଡ଼ । ସେଇ ପିଢ଼ିର ଯେଉଁ ଅଧ୍ୟାପକମାନେ ବିଲାତ ଯାଇଥିଲେ, ସେମାନଙ୍କ ଭିତରୁ ଅଧିକାଂଶ କଳା ସାହେବ ହୋଇ ଫେରିଥିଲେ । ଅନେକ ନାସ୍ତିକ ହୋଇଥିଲେ । ଭାରତୀୟ ସଂସ୍କୃତି ତଥା ସଭ୍ୟତାକୁ ସେମାନେ ଘୃଣା କରୁଥିଲେ । ସେମାନଙ୍କ ଭିତରେ ପ୍ରଫେସର ନାଥ ବ୍ୟତିକ୍ରମ ଥିଲେ । ତାଙ୍କର ଜୀବନଯାପନରେ ଦୈନନ୍ଦିନ ଚଳଣିରେ, ଆଚାରବ୍ୟବହାରରେ ଭାରତୀୟତା ହିଁ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ରହିଥିଲା ।

ଗାନ୍ଧୀ-ଦର୍ଶନରୁ ପ୍ରେରଣା ପାଇ, ପ୍ରଫେସର ନାଥ ଗାନ୍ଧୀବାଦକୁ ନିଜର ଜୀବନରେ ପ୍ରୟୋଗ କରିଥିଲେ । ମହାତ୍ମାଗାନ୍ଧୀଙ୍କର ମୌଳିକ ଶିକ୍ଷାକୁ ଓଡ଼ିଶାରେ ପ୍ରୟୋଗ କରିବାରେ ସେ ଅଗ୍ରଣୀ ଥିଲେ । ତାଙ୍କର ବିୟୋଗରେ ଓଡ଼ିଶା ଏବଂ ଭାରତ ଜଣେ ଗାନ୍ଧିବାଦୀ ଶିକ୍ଷାବିତ୍‌କୁ ହରେଇଲା ।

ଶିକ୍ଷାଦାନ ଆଜି ବ୍ୟବସାୟରେ ପରିଣତ ହୋଇଗଲା । ବାଣିଜ୍ୟିକ ଯୁଗରେ ଶିକ୍ଷକ ମଧ୍ୟ ଜଣେ ବଣିକ । ପୂର୍ବେ ଏ ପରମ୍ପରା ନଥିଲା । ଗୁରୁଜ୍ଞାନରେ ଗୁରୁ (ଓଜନିଆ), ଗୁଣରେ ଗୁରୁ, କର୍ମରେ ଗୁରୁ, ଶିକ୍ଷାଦାନଦ୍ୱାରା ମଣିଷ-ଜନ୍ତୁକୁ ଉତ୍ତରଣ କରେଇ ମାନବୀୟ ସୋପାନକୁ ଉତ୍‌ଥାପନ କରିବାର ଗୁରୁ ଦାୟିତ୍ୱ ବହନ କରିଥିବାରୁ ସେ ଗୁରୁ । ଆଚାର୍ଯ୍ୟ ଜ୍ଞାନ ସୃଷ୍ଟି କରେ, ତାକୁ ଆଚରଣ କରି ନିଜର ଜୀବନରେ ପ୍ରୟୋଗ କରେ, ଆଚରଣ ସିଦ୍ଧ ଜ୍ଞାନକୁ ସେ ଛାତ୍ରଛାତ୍ରୀଙ୍କୁ ଦାନ କରେ । ପ୍ରଫେସର ଶତ୍ରୁଘ୍ନ ନାଥ ଏଇ ପରି ଜଣେ ଆଦର୍ଶ ଗୁରୁ ଏବଂ ଆଚାର୍ଯ୍ୟ ଥିଲେ । ଭଲ ମଣିଷ ତିଆରି କରିବା ଏକ ମହତ କର୍ମ । ଏପରି ମହତ କର୍ମ ସମ୍ପାଦନ କରିବାରେ ସେ ଜୀବନକୁ ଉତ୍ସର୍ଗ କରିଥିଲେ । ତାଙ୍କର ବିୟୋଗରେ ଓଡ଼ିଶା ଜଣେ ଉଚ୍ଚକୋଟୀର ଶିକ୍ଷାବିତ୍‌କୁ ହରେଇଲା ।

ପ୍ରଫେସର ନାଥ ଜଣେ ସାଧୁସନ୍ଥ ଧାର୍ମିକ ବ୍ୟକ୍ତି ଥିଲେ । ସେ ମହିମା ଧର୍ମରେ ଦୀକ୍ଷିତ ହୋଇଥିଲେ । ମହିମା-ଧର୍ମ ଉପରେ ସେ ଅନେକ ଦାର୍ଶନିକ ପୁସ୍ତକ ଲେଖିଯାଇଛନ୍ତି । ସେ ମହିମା ଧର୍ମାବଲମ୍ବୀ ହୋଇଥିଲେ ସୁଦ୍ଧା, ମାନବୀୟ ଧର୍ମକୁ ଆଚରଣ କରୁଥିଲେ ଏବଂ କୌଣସି ବାଦ (ଇଜ୍ମ)ର ନିଗଡ଼ ଭିତରେ ସୀମିତ ନଥିଲେ । ସେ ଅତିମାତ୍ରାରେ ଉଦାରପନ୍ଥୀ ଥିଲେ ।

ସାର୍ ମିଷ୍ଟଭାଷୀ ଥିଲେ । କାରୁଣିକ ଥିଲେ । ଅନ୍ୟର ସୁଖଦୁଃଖରେ ସେ ସୁଖୀଦୁଃଖୀ ଥିଲେ । ତାଙ୍କ ପାଖରେ ମଣିଷପଣିଆ ଭରି ରହିଥିଲା ।

ମାର୍ଚ୍ଚ ୧୧ ତାରିଖ ସକାଳ ପାଞ୍ଚଟାରେ ମୋର ମଧ୍ୟମା ବଧୂ ସ୍ନିଗ୍ଧା ମୋ ପାଖକୁ ଆସି ମନଦୁଃଖରେ ମୋତେ ଦୁଃସମ୍ବାଦ ଶୁଣେଇଲା - "ପ୍ରଫେସର ଶତ୍ରୁଘ୍ନ ନାଥ ଚାଲିଗଲେ ।" ମୁଁ ପ୍ରାୟ ଦେଖିପାରେ ନାହିଁ, ଚାଲିପାରେ ନାହିଁ । ସେଇ ଅବସ୍ଥାରେ କାହାରି ସାହାଯ୍ୟ ନନେଇ, ମୋର ଚାରିଗୋଡ଼ିଆ ବାଡ଼ିଟିକୁ ଧରି, ଦରଜ ଅନ୍ଧାରେ ଟଳମଳ ହୋଇ ଚାଲି, ସାରଙ୍କ ପବିତ୍ର ଶରୀରକୁ ଦର୍ଶନ କରିବାକୁ ଗଲି । ମୋ ହାତରେ ଫୁଲ ନଥିଲା । କ'ଣ ସମର୍ପଣ କରି ସମ୍ମାନ ଜଣେଇବି ? ଆଖିରୁ ଲୋତକଧାର ଗଡ଼ିଲା । ତା' ମୋର ପାଦ୍ୟାର୍ପଣ ।

**୭୧୨, ଶହୀଦନଗର**

**ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।**

- ବନ୍ଦନା ମିଶ୍ର, ସଂପାଦିକା ଓ 'ତୀରତରଙ୍ଗ' ପରିବାର



# ତା'ର କାରଣ ଅଛି

**ପ୍ରଫେସର ସୁରେନ୍ଦ୍ର ମୋହନ ପାଣୀ**

ଶନିବାର, ସମୟ ଦିନ ବାରଟା ପରେ ହେବ; ପ୍ରାକ୍ଟିକାଲ ପରୀକ୍ଷା ଚାଲିଛି । ପିଲାମାନେ ଆସୁଛନ୍ତି । ଟେଷ୍ଟ ପରୀକ୍ଷା ଦେଇ ସାରିଲା ପରେ ଯାଉଛନ୍ତି । ହଠାତ୍ ଜଣେ ପୁରାତନ ବନ୍ଧୁ ତଥା ସହକର୍ମୀ ଆସି ଖବର ଦେଲେ, ସାର୍ ଶୁଣିଲେଣି ? ପ୍ରଫେସର ନାଥଙ୍କ କଥା ଶୁଣିଲେଣି ? ସେ କିଛି କହିପାରୁ ନଥାନ୍ତି । କେବଳ ଏତିକି କହିଲେ ଯେ ଟେଲିଫୋନ୍‌ରେ କନ୍‌ଫରମ୍ କରନ୍ତୁ । ତା'ପରେ ସେ ନିଜେ ଟେଲିଫୋନ୍ କଲେ ଏବଂ କହିଲେ ଖବର ସତ୍ୟ । ପ୍ରଫେସର ନାଥ ଚାଲିଗଲେ । ବର୍ତ୍ତମାନ ସାର୍ ଫେରିବେ ଭୁବନେଶ୍ୱର, ପରୀକ୍ଷା ବନ୍ଦ ହୋଇଯିବ । ପିଲାମାନେ ବ୍ୟସ୍ତ ହୋଇପଡ଼ିଲେ । ପୁଣି କେବେ ପରୀକ୍ଷା ହେବ । କାହିଁକି ପରୀକ୍ଷା ବନ୍ଦ ହେବ । ଜଣେ କେହି କହୁଥାଏ ତା'ର କାରଣ ଅଛି । ମୋର ମୋବାଇଲ୍ ଫୋନ୍ ଅନ୍ କଲି । ଘନଘନ ଟେଲିଫୋନ୍ ପାଇଲି । ଅନେକ ଟେଲିଫୋନ୍ । ମୋର ଜଣେ ଛାତ୍ର ଖବର ଦେଲେ- 'ସାର୍, ଆମେ ସତ୍ୟନଗରରୁ ଫେରୁଛୁ । ଆପଣଙ୍କୁ ପାଇଲୁନି ।' ମୁଁ କହିଲି- 'ମୁଁ ବାହାରୁଛି ।' ସଂଗେସଂଗେ ସେ କହିଲେ ପରୀକ୍ଷା ବନ୍ଦ କରି କାହିଁକି ଆସିବେ । ଅବଶେଷ ରହିଗଲା । ଶେଷ ଦର୍ଶନ ସମ୍ଭବ ହେଲାନି । ସେଦିନ ଖୁବ୍ ଭୋରରୁ ମୁଁ କଟକ ଛାଡ଼ି ପୁରୀ ଯାଇଥାଏ । ଅନର୍ସ ପିଲାଙ୍କର କମ୍ପ୍ୟୁଟର ପ୍ରାକ୍ଟିକାଲ୍ ପରୀକ୍ଷା । ସେଠାରେ ପହଞ୍ଚି ମନ୍ଦିରକୁ ଯାଇଥାଏ । ମନ୍ଦିର ଭିତରକୁ ମୋବାଇଲ୍ ବନ୍ଦ । ମନ୍ଦିର ଭିତରେ ବେଶ୍ କିଛି ସମୟ ରହିବାକୁ ପଡ଼ିଲା । ସେତିକିବେଳୁ ମୋବାଇଲ୍ ବନ୍ଦ । ତାପରେ ପରୀକ୍ଷା । ପରୀକ୍ଷା ସମୟରେ ମୋବାଇଲ୍ ବନ୍ଦ । ମୁଁ ଆସିପାରିଲିନି । ପିଲାଙ୍କର ପରୀକ୍ଷା ସରିଲା । ପିଲାଏ ଖୁସିରେ ଗଲେ । ଏହା ବୋଧେଥିଲା ସେହି ମହାନ ଆତ୍ମାଙ୍କର ଉଦ୍ଦେଶ୍ୟ ଓ ନିର୍ଦ୍ଦେଶ । ପିଲାଏ ହଇରାଣ ନହୁଅନ୍ତୁ । ଆମେ ଶିକ୍ଷକ । ପିଲାଙ୍କୁ ମଣିଷ କରିବା ଆମର କାମ । ସେମାନଙ୍କ ଭଲମନ୍ଦ, ଦୁଃଖସୁଖ ବୁଝିବା ଆମ କର୍ତ୍ତବ୍ୟ । ଯେତେବେଳେ ଦେଖା ହେଲେ ସେ ପ୍ରଥମେ ପଚାରନ୍ତି, ଆରେ ପିଲାଙ୍କ ଖବର କହ । ମାନେ କଲେଜ ପିଲାଙ୍କ ଖବର । ପାଠପଢ଼ା ଠିକ୍ ଚାଲିଛି ତ । ଗୋଟାଗୋଟା କରି ସମସ୍ତ କଥା ପଚାରି ଯାଆନ୍ତି । କଲେଜ ଇତିହାସ କହିଯାଆନ୍ତି । କଲେଜର ଇତିହାସ ନୁହେଁ ତ ଶିକ୍ଷକ ଶିକ୍ଷାର ଇତିହାସ । ଶିକ୍ଷକମାନଙ୍କର ଜୀବନୀ । କୌଣସି ବ୍ୟକ୍ତିର ଅଶୋଭନୀୟ ଆଚରଣ, ବ୍ୟବହାର ଓ କର୍ମ ବିଷୟରେ ସେ କେବେ କହିବାର ମୁଁ ଶୁଣିନି । ଜାଣିବା ଲାଗି ଅନେକଥର ମୁଁ ତାଙ୍କୁ କାହାକାହା ବିଷୟରେ ପଚାରିଛି । କୁହନ୍ତି- ଆରେ, ସେଗୁଡ଼ା କାହିଁକି ଶୁଣୁଚ ? ଯାହା ଶୁଣାଯାଏ ତାହା ସବୁ ସତ ହୋଇ ନଥାଏ । ମଣିଷର ଭଲଗୁଣ ଦେଖ, ଭଲକଥା ଶିଖ । ପରିସ୍ଥିତିର ଦାସ ହୋଇ ଯଦି କେହି କିଛି ଭୁଲ୍ କରେ ତାକୁ କ୍ଷମା କର । ମାଆ ପାଖରେ ବସିଥିଲେ କହନ୍ତି- ପାଣୀରେ, ସାରଙ୍କର ସମସ୍ତେ ଭଲ । ସେକେବେ କାହାକୁ ଖରାପ କହିବାର ଶୁଣିଛୁ ? ମୁଁ ସବୁ ଜାଣିଛି, ସେ ଲୋକଟା କଥା ଆଉ ସାର୍‌ଙ୍କ ଆଗରେ ପକାନା ବେଶ୍ ସେତିକିରେ ଶୁଣିଥିବା କଥାଟା କେତେ ସତ ମୁଁ ଜାଣିପାରେ । ସାର୍‌ଙ୍କ ଦୃଷ୍ଟିରେ ସବୁଲୋକ ଭଲ, ସବୁପିଲା ଭଲ, ସବୁ ଶିକ୍ଷକ ଭଲ, ସମସ୍ତେ ଭଲ । ମନ୍ଦ ହେଉଛି ସମୟ, ମନ୍ଦ ହେଉଛି ପ୍ରକୃତି, ମନ୍ଦ ହେଉଛି ମଣିଷର ପ୍ରକୃତି । ଛାତ୍ରଛାତ୍ରୀମାନଙ୍କୁ ସେ ନିଜ ସନ୍ତାନ ସମାନ ମନେ କରୁଥିଲେ । ନିଜ କର୍ତ୍ତବ୍ୟସ୍ଥଳକୁ ନିଜ ଘର ଅପେକ୍ଷା ଅଧିକ ଭଲ ପାଉଥିଲେ । ନିଜ ଅପେକ୍ଷା ନିଜ କର୍ତ୍ତବ୍ୟକୁ ଅଧିକ ଭଲ ପାଉଥିଲେ ।

କାଲିଭଳି ମନେ ପଡୁଛି । ମୁଁ ତାଙ୍କ ପାଖରେ ପିଏଚ୍‌ଡ଼ି କରୁଥାଏ । ଉଣେଇଶି ଶହ ଛଅସ୍ତରୀ ମସିହାର କଥା । ସକାଳ ଆଠଟା ଯାଏ ମୋର ଶୋଇବା ଅଭ୍ୟାସ ଥିଲା । ସକାଳ ପାଞ୍ଚଟାରେ କଲିଂବେଲ୍ ବାଜିଲା । ମୋର ନିଦ ଭାଙ୍ଗିଗଲା । ହଠାତ୍ ରାଗିଯାଇ କବାଟଟାଖୋଲିଦେଲି । ବିଶ୍ୱାସ କରି ପାରିଲିନି ମୋ ସାମ୍ନାରେ ସାର୍ । କହିଲେ କିରେ ଉଠିନୁ ? ପଛୁଆ ପଡ଼ିଯିବୁରେ ? ବାସ୍, ସେତିକି । ଏତିକି ଯଥେଷ୍ଟ । କେବେ ଟାଣ କରି ପଦେ କରିବାର ମୁଁ ଶୁଣିନି । ସେ କୁହନ୍ତି ଅନ୍ୟର କର୍ତ୍ତବ୍ୟ ବିଷୟରେ ସୂଚେଇ ଦେବା ଆମର କର୍ତ୍ତବ୍ୟ । ରାଗିକରି ଗାଳିମନ୍ଦ କଲେ ପରାମର୍ଶର ଓଜନ କମିଯାଏ ।

ମୋର ବିଲାତ ଯିବା କଥା ଠିକ୍ ହୋଇଥାଏ । ସାର୍‌ଙ୍କ ପାଖକୁ ଗଲି, କହିଲି । ଭାରି ଖୁସି ହେଲେ । ଲଣ୍ଡନ୍ ଇନ୍‌ଷ୍ଟିଚ୍ୟୁଟ୍ (Institute of Education, London University) ତାଙ୍କର



ପୁରୁଣା ଯାଗା । ମୁଁ ସେଠିକି ଯିବି ପଢ଼ିବା ଲାଗି । ସେ ଅନୁଷ୍ଠାନର ସେ ପୁରାତନ ଛାତ୍ର । ବିଲାତ କଥା କହିଲେ, ସେ ସେଠି କେମିତି ପଢୁଥିଲେ କହିଲେ । ତାଙ୍କ ଶିକ୍ଷକମାନଙ୍କ କଥା, ଆମ ଓଡ଼ିଶାରୁ ଯେଉଁମାନେ ସେଠାକୁ ଯାଇଛନ୍ତି ସେମାନଙ୍କ କଥା, ସେଠାରୁ କିଏ କ'ଣ ଡିଗ୍ରୀ ପାଇଛି, କିଏ କେମିତି ସେଠାରେ ଦିନ କଟାଉଛି । ସାରାଂଶ ହେଲା ଭଲ ଶିଖ । ଭଲ ଆଚରଣ କର । ପ୍ରାୟ ଦୁଇଘଣ୍ଟା ଗପିଲେ । ମନେ ହେଲା ସତେ ଯେମିତି ସନ୍ଦେହ କରୁଛନ୍ତି ମୁଁ ଅବାଟରେ ଚାଲିଯିବି । ଫେରିଲା ପରେ ଥରେ ସାହସ କରି ସେ ବିଷୟରେ ଆଲୋଚନା କଲି । ହସିହସି କହିଲେ- ଆରେ ସମୟ ବଦଳି ଗଲାଣି । ଆମ ସମୟ ନାହିଁ । ଏହି ପଇଁତିରିଶ ବର୍ଷ ଭିତରେ ଦୁନିଆ କେତେ ବଦଳିଛି । ଆଭିମୁଖ୍ୟ ବଦଳିଛି । ତେଣୁ ମୁଁ ତୋତେ ମୋର ଅନୁଭୂତି ଶୁଣେଇଲି । ମୁଁ ହୃଦ୍‌ବୋଧ କଲି ସାର୍ କାହିଁକି ଏତେ କଥା କହିଥିଲେ । ତାର କାରଣ ଅଛି ।

୧୯୯୮ ମସିହା ମେ ମାସ ୨୯ ତାରିଖ । ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧ୍ୟାନ-ପ୍ରତିଷ୍ଠାନର ଅଧ୍ୟକ୍ଷ ଭାବରେ କାର୍ଯ୍ୟଭାର ଗ୍ରହଣ କଲାପରେ ସନ୍ଧ୍ୟାରେ ସାର୍‌ଙ୍କ ଘରକୁ ଗଲି । ସେ ପର୍ଯ୍ୟନ୍ତ ସେ ଜାଣି ନାହାନ୍ତି ଯେ ମୋର ଏଠାରେ ପୋଷ୍ଟିଂ ହୋଇଛି । ରାତାରାତି କାଗଜ ଧରି ନିଜ ଆସନ ଜାବୁଡ଼ିବା ହେଲା ବଡ଼କଥା । ହେଲାକଲେ ଅନ୍ୟ କିଏ ବସିଯିବ ବା କୋର୍ଟ ଅର୍ଡରରେ ଯାଗା ଖାଲି ପଡ଼ିବ । ପିଲାଙ୍କ କଥା, ଅନୁଷ୍ଠାନ କଥା ବା ଶିକ୍ଷକ ଶିକ୍ଷା କଥା ପଚାରୁଛି କିଏ ? ସାର୍ ମୋର ଜଏନ୍ କରିବା କଥା ଶୁଣି ଭାରି ଖୁସି ହେଲେ । କହିଲେ ସତର୍କ ରହିବୁ । ହାଇକୋର୍ଟ ପାଖ । ଏତିକି ଇସାରା ଯଥେଷ୍ଟ । ତାପରେ କହିଲେ ପ୍ରିନ୍‌ସିପାଲ୍‌ଙ୍କ ରୁମ୍‌ର ଚାରିପଟେ ସବୁ ଫଟୋ ଅଛି । ପୂର୍ବତନ ପ୍ରିନ୍‌ସିପାଲ୍ ମାନଙ୍କର । ସମାଜସେବୀ ଓ ବଡ଼ ମଣିଷମାନଙ୍କର । ରାଧାନାଥ ରାୟଙ୍କଠାରୁ ଆରମ୍ଭ କରି ରାଧା କ୍ରିଷନ୍‌ଙ୍କ ପର୍ଯ୍ୟନ୍ତ । ଗୋପବନ୍ଧୁଙ୍କଠୁ ମହାତ୍ମାଗାନ୍ଧୀଙ୍କ ପର୍ଯ୍ୟନ୍ତ । ଏଠାରେ କୌଣସି ଦେବାଦେବୀ ମାନଙ୍କ ଫଟୋ ନାହିଁ । ଯେକୌଣସି କାମ କଲାବେଳେ ସେମାନଙ୍କ କଥା ମନେ ପକେଇବୁ । ଯେତେବେଳେ ଏକୁଟିଆ ବସୁଥିବୁ ସେମାନଙ୍କ କଥା ମନେ ପକାଉଥିବୁ । ଆଉ ସେଇ ଚଉକିଟା କାଠ ଚଉକି ସାବଧାନରେ ବସିବୁ । ସେଥିରେ ଆଜିକାଲି ଚଉକି ପରି ଆଉଜେଇ ହୋଇ ବସିବାର ସୁବିଧା ନାହିଁ । ସାବଧାନ ନହେଲେ ପଡ଼ିଯିବୁ । କିଛି ଦିନ ପରେ ଖରାଛୁଟି ସରିଲା । କଲେଜ ଆସିଲି । ସବୁ ଫଟୋଗୁଡ଼ିକୁ ଥରେ ଦେଖିଦେଲି । କେତେ କଥା ଭାବିଲି । ସାର୍ ଯେଉଁ ଚଉକିରେ ବସୁଥିଲେ ଏଇ ସେଇ ଚଉକି । ସେଇ ବ୍ରିଟିଶ୍ ଅମଳର ଚଉକି । କାଠ ଚଉକି । ଲୁହା ଚକା ଲାଗିଛି । କେତେ ବଡ଼ବଡ଼ ଲୋକ ଏଇ ଚଉକିରେ ବସିଛନ୍ତି । ଆଧୁନିକ ଓଡ଼ିଶା ଗଠନ ଲାଗି ଏଇଠୁ ନିର୍ଦ୍ଦେଶ ଦେଇଛନ୍ତି । ଓଡ଼ିଶାର ଇତିହାସ ସୃଷ୍ଟି କରିବାରେ ପ୍ରେରଣା ଦେଇଛନ୍ତି । ଶିକ୍ଷକ ସମାଜ ସୃଷ୍ଟି କରିଛନ୍ତି । ଏଇ ସେଇ ଚଉକି । ଯେଉଁ ଚଉକିରୁ ଅତୀତରେ ନିର୍ଦ୍ଦେଶ ଯାଇଛି ସଂକଳ୍ପ କର । ସାଧନା କର, ଗାନ୍ଧୀଙ୍କ ଆଦର୍ଶ ରେ ସଂଗ୍ରାମ କର । ଆଧୁନିକ ସମାଜ ଗଠନ କର । ଅନ୍ୟାୟ ଅତ୍ୟାଚାର ଦୂର କରିବାରେ ସାହାଯ୍ୟ କର । ଶିଖ, ଶିଖାଅ ଓ ମଣିଷ ଗଢ଼ । ଏଇ ଚଉକି ଶିକ୍ଷକ ସମାଜର ଆଦର୍ଶ ହେଉ । ଶିକ୍ଷକ ସମାଜକୁ ପ୍ରେରଣା ଦେଉ । ନିଜକୁ ସମୀକ୍ଷା କରିବାକୁ ଚେଷ୍ଟା କଲି । ମନେହେଲା ଏଭଳି ଚଉକିରେ ବସିବାଲାଗି ମୁଁ ଯୋଗ୍ୟ ନୁହେଁ । ଏଇ ଚଉକିରେ ସାର୍ ବସିଥିଲେ । ତାଙ୍କ ଗୁଣାବଳୀର ଶହେ ଭାଗରୁ ଭାଗେ ମୋ ପାଖରେ ନାହିଁ । କେବଳ ମୁଁ କାହିଁକି ଏ ପିଢ଼ିର କୌଣସି ପ୍ରିନ୍‌ସିପାଲ୍‌ଙ୍କର ମଧ୍ୟ ନାହିଁ । ମନେ ପଡ଼ିଲା ସେଦିନର କଥା । ସେହି ସମୟର ଚଉକିରୁ ତଳେପଡ଼ି ଜଣେ ପ୍ରାଧ୍ୟାପକ ଡାକ୍ତରଖାନା ଗଲେ । ସହକର୍ମୀମାନେ ହସାହସି ହୋଇ କହିଥିଲେ- ଇଏ ସେ ଚଉକିରେ କାହିଁକି ବସିଲେ । ଏଟା ତ ତାଙ୍କ ଚଉକି ନୁହେଁ । ମୋର ପଡ଼ିଯିବାର ଭୟ ନଥିଲା । ଚଉକି ଭାଙ୍ଗିଯିବାର ଭୟ ନଥିଲା, ଭୟଙ୍କର ଭୟ ହେଲା ମୋର ବ୍ୟକ୍ତିତ୍ୱର ସମକ୍ଷାକୁ । ନିଷ୍ପତ୍ତି ବୋଲି ମୋର ପୂର୍ବ ପିଢ଼ିଙ୍କର ଏ ଚଉକି ମୋର ଗୁରୁଙ୍କର ଏ ଚଉକି ସୁରକ୍ଷିତ ହୋଇ ରହିବ । ବଡ଼ବାବୁଙ୍କୁ ଡାକିଲି, ନିର୍ଦ୍ଦେଶ ଦେଲି ଏଇ ଚଉକିଟି ନେଇ ଷ୍ଟୋର ରୁମ୍‌ରେ ରଖନ୍ତୁ । ଲାଇବ୍ରେରୀ ବିଲ୍‌ଡିଙ୍ଗ୍ ହେଲାପରେ ଏଇ ଚଉକି ସେଠି ରହିବ । ମୁଁ ଏହା ବ୍ୟବହାର କରିବିନି । ସେ ଅବାକ୍ ହୋଇ ମୋ ମୁହଁକୁ ଚାହିଁଲେ । କହିଲେ- 'ସାର୍, ଆପଣ ରେଗୁଲାର୍ ପ୍ରିନ୍‌ସପାଲ୍, ଏ ଚଉକିରେ ବସିବେ । ଅନ୍ତତଃ ନୂଆ ଚଉକିଟିଏ କିଣା ହେବା ପର୍ଯ୍ୟନ୍ତ ଏଇଟା ବ୍ୟବହାର କରନ୍ତୁ ।' ମୁଁ ହଠାତ୍ ରାଗିଗଲି । କହିଲି- 'ମୁଁ ଯାହା କହୁଛି ସେଇଆ କରନ୍ତୁ ।' ବୁଲିପଡ଼ିଲି । ସାର୍‌ଙ୍କ ଫଟୋରେ ଆଖି ପଡ଼ିଗଲା । ନରମି ଗଲି । କହିଲି- ବଡ଼ବାବୁ, ତା'ର କାରଣ ଅଛି ।

**ଅଧ୍ୟକ୍ଷ, ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧ୍ୟାନ ପ୍ରତିଷ୍ଠାନ, କଟକ**



# ଦୁଃଖକଷ୍ଟରେ ଈଶ୍ୱରଙ୍କୁ ଦେଖ

ଲଡୁକେଶ୍ୱର ସାହୁ

ସେଦିନ ଶତ୍ରୁଘ୍ନ ମଉସାଙ୍କ ସାଙ୍ଗେ ଫେରୁଥିଲି ବାଙ୍ଗୁରି ଗାଁରୁ, କନ୍ୟା ଦେଖା ସାରି । ବିଲ ଗହିର । ଘରାଦିନଟା ଶେଷ ହୋଇ ଆସୁଥିଲା । ଆକାଶରେ ଦଲ୍‌କା ଦଲ୍‌କା ମେଘ । ଖସିପଡ଼ିବାକୁ ଯେପରି ମୁହାଁଉ ଥିଲା । କଳା ବାଦଲର ବହଳା ଛାଇରେ ସନ୍ଧ୍ୟା ନିକଟେଉଥିବା ଶୂନ୍ୟ ଆକାଶଟାରୁ ଅନ୍ଧାରୁଆ ହୋଇ ଆସୁଥିଲା । ତା ସାଙ୍ଗକୁ ଆତଙ୍କ ସୃଷ୍ଟି କରୁଥିଲା ଚିକ୍‌ଚିକ୍ ବିଜୁଳି ଗୋଟାଏ ଝଡ଼ବର୍ଷାର ସୂଚନା ଦେଇ । ସୁଦୂ ଫାଙ୍କା ଗହିର ମଝିଟା । ସେତେବେଳକୁ ମୁଁ ଟିକିଏ ଡରି ଗଲିଣି । ସାହାଭରସା କେହି ନାହିଁ । ପାଖ ଆଖରେ ଟିକିଏ ନିଜକୁ ସମ୍ଭାଳି ନେବା ପାଇଁ ଘଳିଆଟେ ବି ନାହିଁ । ଖଣ୍ଡେ ଦୂରରେ ଗଛଟିଏ ଦିଶିଲା । ଦୁଇଜଣ ଯାକ ଦୌଡ଼ିଲୁ ସେ ଗଛ ମୂଳକୁ । ଅସରାଏ ବର୍ଷା ନୁହେଁ- ଯେଉଁ ଝଡ଼ବର୍ଷା ଏତେ ନିକଟେଇ ଆସିଲାଣି ପ୍ରବଳ ବେଗରେ ସେ କ'ଣ ଏଇଲେ ଛାଡ଼ିବ ! ଏ ଆଶଙ୍କା ଭିତରେ ମୋ ମନ ଇତସ୍ତତଃ ହେଉଥିଲା । ହାଡ଼ିବନ୍ଧୁ ଦାଦା (ଶତ୍ରୁଘ୍ନ ମଉସାଙ୍କ ଅତିପ୍ରିୟ ସାଥୀ) ସବୁବେଳେ ମନକୁ ଆସିଲେ, କାରଣ ଜୀବନ ସାରା ଯେତେବେଳେ ବିପଦ ମୋ ଆଗରେ, ସେ ଦୌଡ଼ି ଆସିଥାନ୍ତି ମୋ ନିକଟକୁ । ମଉସାଙ୍କ ମୁହଁକୁ ଅନାଉଥିଲି । ଏଥରକ କିନ୍ତୁ ମନପୂରେଇ ଚାହିଁ ରହିଲି । ପ୍ରଶାନ୍ତ, ନିଶ୍ଚଳ, ନିର୍ବିକାର ଓ ନିର୍ଲିପ୍ତ ଜଣାପଡୁଥିଲେ । ଆସନ୍ନ ବିପଦରେ ମଧ୍ୟ ତାଙ୍କର ସେଇ ହସହସ ମୁହଁ । ପରିସ୍ଥିତି ମୋ ଗୋଡ଼କୁ ଆଗକୁ ଭିଡ଼ି ନେଉଥିଲା । ଗଛ ପାଖରେ ପହଞ୍ଚି ଆହୁରି ହତାଶ ହେଲୁ । ସବୁଜ ପତ୍ର ତ ଦୂରର କଥା, ଶୁଖିଲା ପତ୍ରଟିଏ ବି ଗଛରେ କେଉଁଠି ନଥିଲା । ଖୁଣ୍ଟା ଗଛଟି ଗ୍ରୀଷ୍ମ ପ୍ରଖରତାର ପ୍ରତୀକ ରୂପେ ଠିଆ ହୋଇଛି । ଆଉ ଦୁଃଖରେ ମ୍ରିୟମାଣ ହେଲା ପରି ମନେ ହେଉଛି- ଦୁଃଖ ଓ ସନ୍ତାପରେ କିଛି କହି ପାରୁନି କି ଲହୁ ଟୋପାଏ ଖସେଇ ପାରୁନି । ଖାଲି କୋହ.. । ଭାବନା ଅନେକ । ପଥିକଙ୍କୁ ନିଜର ଛାୟା ବିସ୍ତାରି କେତେ ଆନନ୍ଦ ଓ ଶାନ୍ତି ବା ଆରାମ ଦେଉଥିଲା । ଆଜି ଶୁଷ୍କ । ପଥିକଙ୍କ ମନର ବେଦନା ବୁଝି ହେଉନାହିଁ । "ମଉସା ! କ'ଣ କରିବା !" ଏତକ ବୋଧହୁଏ ଶତ୍ରୁଘ୍ନ ମଉସାଙ୍କ କାନରେ ବାଜିଗଲା । "କ'ଣ ହେଲା" ଅମାପ ସ୍ନେହଭରା କଣ୍ଠରେ ପଚାରିଲେ । ମୋଠୁ ଅଧିକ କିଛି ଶୁଣିବାକୁ ଅପେକ୍ଷା ନକରି ସେ କହିଲେ ଏକ ନିରାଟ ସତ୍ୟ କଥା- ଗଭୀର ଅନ୍ଧକାରରେ ଆଲୋକ ବର୍ତ୍ତିକା ପରି । "ଈଶ୍ୱର ତାଙ୍କ ସୃଷ୍ଟିରେ ଭରି ଦେଇଛନ୍ତି ଅସୁମାରି ଦୁଃଖ କଷ୍ଟ । କିନ୍ତୁ ମଣିଷ ତାକୁ ଦେଖି ବ୍ୟତିବ୍ୟସ୍ତ ହେବା ବା ଭାଙ୍ଗି ପଡ଼ିବା ଠିକ୍ ନୁହେଁ, କାହିଁକି ନା ଈଶ୍ୱର ମଧ୍ୟ ସୃଷ୍ଟିଟାକୁ ଭରି ଦେଇଛନ୍ତି କାହିଁ କେତେ ସୌନ୍ଦର୍ଯ୍ୟରେ । ସେସବୁ ଉପଭୋଗ କର । ଭୁଲିଯାଅ ଏ ସଂସାରର ଅସ୍ଥାୟୀ ଦୁଃଖକଷ୍ଟ କଥା । ସବୁବେଳେ ଏ ଝଡ଼ବର୍ଷା ନଥିବ । ଶୁଖିଲାରେ ଥିଲେ ବହୁ ସମୟ । ଆଜି ଏ ପାଣିପବନ, ବିଜୁଳି, ଘଡ଼ଘଡ଼ି ନୂଆ ଅନୁଭୂତି ଆମ ପାଇଁ । ଓଦା ଜୁତୁବୁତୁ ହୋଇ ଯାଅ । ପ୍ରକୃତିର ସବୁ ଖେଳ ଭିତରେ ଏ ଖେଳର ସ୍ୱାଦ ବା ଆନନ୍ଦ ଉପଭୋଗ କରି ଈଶ୍ୱରଙ୍କ ନିକଟରେ ନଇଁ ଯାଅ । ଏଇ ମୁଁ ହସୁଛି । ତମେ ବି ହସ । ଏ ଅନୁଭୂତି ଏ ଅଲିଭା ସ୍ମୃତି ହୋଇ ରହିଯାଉ- ଅନ୍ୟର ଉପଭୋଗ ପାଇଁ- ଅନ୍ୟର ଶିକ୍ଷା ପାଇଁ ମଧ୍ୟ ।" ଏଇମିତି କେତେ ବଡ଼ବଡ଼ ଓଜନିଆ କଥା କହିପକାନ୍ତି ମଉସା ସାମାନ୍ୟ ପରିସ୍ଥିତି, ସାମାନ୍ୟ ଅଘଟଣରେ । ସେଗୁଡ଼ିକ ଜୀବନ ଧରି କାହାର କେତେ ଉପକାରରେ ଆସେ ତାହା ଅନୁଭବୀ ହିଁ କହିବ । ତାଙ୍କ ଶ୍ରୀମୁଖରୁ ବାହାରି ଆସିଥିବା ଏଇ କେତେକ ଶବ୍ଦରୁ ମୁଁ ମୋ ଜୀବନ ଧରି ଦିଗ୍‌ଦର୍ଶନ ପାଇ ଆସିଛି । ପରିଣତ ବୟସ ଯାଏଁ ମଧ୍ୟ ତାଙ୍କ ଅମୂଲ୍ୟ ନୀତିଗତ ଉପଦେଶରୁ ଯେଉଁ ମୂଲ୍ୟ ପାଇଛି ସେ ଋଣ ସୁଝିବା ସମ୍ଭବ ହେଉନାହିଁ । ପିତୃଋଣ ଅସୁଝା ରହିଗଲା ପରି ମନେ ହେଉଛି । ଖାଲି ମୋର ନୁହେଁ ମୋ ପରିବାରରେ ସେଥିଲେ ପରମଗୁରୁ ସ୍ୱରୂପ- ଅସରନ୍ତି ପ୍ରେରଣାର ଉତ୍ସବ ସ୍ୱରୂପ । ଭଲମନ୍ଦ ସୁଖଦୁଃଖରେ ଏପରିକି ଈଶ୍ୱର ସ୍ମରଣରେ ତାଙ୍କ ବହୁ ଅମୂଲ୍ୟ ସ୍ମୃତି ଆମ ଜୀବନ ନିର୍ବାହର ପାଥେୟ ହୋଇ ଆସିଛି । ଯାଇଥିଲି ଦର୍ଶନ ପାଇଁ, ଯେତେବେଳେ ସେ ଶଯ୍ୟାରେ ପଡ଼ି ରହିଥିଲେ, ଲୋକ ଚିହ୍ନି ପାରୁ ନଥିଲେ । କିଛି ସମୟ ଶଯ୍ୟା ନିକଟରେ ରହିବାରେ ତାଙ୍କ ଅନ୍ତରରୁ ମୋ ନାଁଟି ଅସ୍ପଷ୍ଟ ଉଚ୍ଚାରଣ କଲେ । ମୋ ପାଇଁ ତାଙ୍କଠୁ ସେତକ ଥିଲା ଶେଷ କଥା । ଆଜି ଝୁରି ହେଉଛି ସେତକ ମନେ ପକାଇ । କୋଟିକରେ ଗୋଟିଏ ମଣିଷଟିଏ ସେ ଥିଲେ । ହୃଦୟଟା ସ୍ନେହଶ୍ରଦ୍ଧା ଓ ନରମ ଭାବରେ ଭରା । ରାଗ, ଦ୍ୱେଷ, ବିରକ୍ତି ଓ ଅଭିମାନ ତାଙ୍କୁ ସ୍ପର୍ଶ କରିନଥିଲା । ପାଟି ଖୋଲିଲେ ତାଙ୍କ ସ୍ନେହବୋଳା କଥାରେ ଯେ କୌଣସି ରୁକ୍ଷ ବ୍ୟକ୍ତି ତରଳିଯିବ । ପରିବାର ତାଙ୍କ ପାଇଁ ସ୍ୱର୍ଗ ଥିଲା । ମାଉସୀ ଚାଲିଗଲା ପରେ ସେ ଟିକିଏ ଭାଙ୍ଗି ପଡ଼ିଥିଲେ । ଏପରି ଦମ୍ପତି ସୃଷ୍ଟିରେ ବିରଳ । ସବୁ ପିଲାଙ୍କୁ ସେ ନିଜ ହାତରେ ଗଢ଼ିଲା ପରି କରିଥିଲେ । ଛାତ୍ର ବତ୍ସଳତା ତାଙ୍କର ବୈଶିଷ୍ଟ୍ୟ । ତାଙ୍କ ସୁଦକ୍ଷ ଶାସନ, ବିନା ଦଣ୍ଡରେ ଏକ ଆଦର୍ଶର ସୃଷ୍ଟି । ସାରସ୍ୱତ ସାଧନା ତାଙ୍କୁ ସୁପରିଚିତ କରାଇଥିଲା ସାହିତ୍ୟ ଜଗତରେ । ବହୁ ସମ୍ମାନରେ ଅଧିକାରୀ ହୋଇଥିଲେ । ସର୍ବୋଚ୍ଚ ଓ ସର୍ବାଦୃତ 'ଉତ୍କଳରତ୍ନ' ଉପାଧିରେ ସେ ଭୂଷିତ ହୋଇଥିଲେ । ଅବଶ୍ୟ ତାଙ୍କ ମହତ୍‌ପଣିଆ ଆଗରେ ଏସବୁ ନିଅଣ୍ଟ ଥିଲା ।

ପ୍ଲଟ୍-୩୦, ଗୌତମନଗର



# ଯାତ୍ରା ଶୂନ୍ୟ ମନ୍ଦିରକୁ

**ଶୈଳବାଳା ମିଶ୍ର**

ଚଳିତ ମାର୍ଚ୍ଚ ମାସ ଏଗାର ତାରିଖ ଶନିବାର୍ ଭୋର୍‌ରୁ ମିଶ୍ରବାବୁଙ୍କ ଠାରୁ ଫୋନ୍‌ରେ ଖବର ପାଇଲି ଯେ ପ୍ରଫେସର ଶତ୍ରୁଘ୍ନ ନାଥ ଦଶ ତାରିଖ ରାତି ୧୧ଟା ୩୦ ସମୟରେ ଦେହତ୍ୟାଗ କଲେ । ଯିବାର ବୟସ ତ ହୋଇ ଥିଲା । ତଥାପି ହଠାତ୍ ଏଭଳି ଖବରଟି ଶୁଣିଲେ ଛାତି ଭିତରଟା କିଭଳି ଟିକେ ହୋଇଯାଏ । କ'ଣ କରିବି । ତାଙ୍କର ପ୍ରିୟ କେତେଜଣଙ୍କୁ ଫୋନ୍‌ରେ ଏହି ଖବର ଜଣାଇ ଦେଲି । ତାଙ୍କ ବିଷୟରେ ବହୁତ କଥା ମନେପଡ଼ିଲା । ତାଙ୍କର ସେ ଶାନ୍ତ, ସରଳ, ସ୍ନେହଶୀଳ କଥା ଆଉ ବୋଧେ ଶୁଣିବାକୁ ମିଳିବ ନାହିଁ । ଖାଲି ସ୍ମୃତିଚାରଣ କରିବା କଥା ।

୧୯୪୪, ୪୫ର କଥା । ମୁଁ ସେତେବେଳେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ସପ୍ତମ ଶ୍ରେଣୀରେ ପଢୁଥାଏ । ଦିନେ ଜଣେ କିଏ ଆମ କ୍ଲାସ୍‌ର ପିଲା ଆସି କହିଲା, 'ଜଣେ ନୂଆ ସାର୍ ଆସିଛନ୍ତି । ସେ ଆମର ଗଣିତ କ୍ଲାସ୍ ନେବେ । ତାଙ୍କର ନାଁ ଶ୍ରୀ ଶତ୍ରୁଘ୍ନ ନାଥ ।' ଅନେକ ପିଲା ଅବଶ୍ୟ ଟିକେ ଚିନ୍ତାକଲେ । ନୂଆସାର୍ କ'ଣ କିଭଳି ପ୍ରକୃତିର ହୋଇଥିବେ । ଗଣିତରେ ଦୁର୍ବଳ ଥିବା କେତେକ ପିଲା ସାଧାରଣତଃ ଟିକେ ଡରିଗଲେ । କିନ୍ତୁ ଗଣିତରେ ନୂଆ ସାର୍ ସତରେ ଯେଉଁ ଦିନ ଆମ କ୍ଲାସ୍‌କୁ ଆସି ପିଲାମାନଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ, ତାଙ୍କର ଶାନ୍ତ, ଶିଷ୍ଟ, ସରଳ ସ୍ନେହଶୀଳ କଥା ଶୁଣି ପିଲାମାନଙ୍କର ଗଣିତ ପଢ଼ିବାର ଆଗ୍ରହ ବେଶ୍ ବଢ଼ି ଯାଇଥିଲା । ସାର୍ ପିନ୍ଧିଥାଆନ୍ତି ଇସ୍ତୀକରା ଧୋତି । ସାଙ୍ଗରେ ଫୁଲ ସାର୍ଟଟିଏ । ସୁନ୍ଦର ଭାବରେ ଗଣିତ ବୁଝାନ୍ତି । ଗଣିତରେ ଦୁର୍ବଳ ଥିବା ପିଲାମାନଙ୍କୁ ସେ ବାରମ୍ବାର ସରଳ ଉପାୟରେ ଗଣିତ ବୁଝାଇବାର ଚେଷ୍ଟା କରିଥାଆନ୍ତି । କେବେ କେଉଁ ଛାତ୍ର, ଛାତ୍ରୀମାନଙ୍କ ଉପରେ ରାଗିବା କିମ୍ବା ବିରକ୍ତ ହେବା ମୋର ତ କାହିଁ ମନେ ପଡୁନାହିଁ । ପ୍ରାୟ କ୍ଲାସରେ ପ୍ରତ୍ୟେକ ଛାତ୍ର, ଛାତ୍ରୀ ସାର୍‌ଙ୍କୁ ବେଶ ଭଲ ପାଆନ୍ତି ଓ ସମ୍ମାନ କରନ୍ତି ।

ମାତ୍ର ଆମ ସ୍କୁଲରେ ସାର୍ ମାତ୍ର ଗୋଟିଏ ବର୍ଷ ରହିଲେ । ସେତେବେଳେ ମୋର ବାବା ୰ ନାରାୟଣ ପତି ସେହି ସ୍କୁଲରେ ସହକାରୀ ପ୍ରଧାନ ଶିକ୍ଷକ ଥାଆନ୍ତି । ମୁଁ ଆଗରୁ ତାଙ୍କଠାରୁ ଶୁଣିଥିଲି ଯେ ଶତ୍ରୁଘ୍ନ ନାଥ ଲଣ୍ଡନରେ କେଉଁ ବିଶ୍ୱବିଦ୍ୟାଳୟରେ ଅଧିକ ପଢ଼ିବା ପାଇଁ ଚାଲିଯିବେ । ଗଣିତ ମୋର ପ୍ରିୟ ବିଷୟ ଥିଲା । ତେଣୁ ସାର୍‌ଙ୍କ ପ୍ରତି ସେଇ ଛୋଟ ବୟସରେ ଅଧିକ ସ୍ନେହ ଓ ସମ୍ମାନ ଥିଲା । ସେହି ପିଲାଳିଆ ବୁଦ୍ଧିରେ ମୁଁ 'ବାବା'ଙ୍କୁ ପଚାରିଥିଲି- ସାର୍ କ'ଣ ଲଣ୍ଡନରୁ ପଢ଼ାସାରି, ପୁଣି ଆମ ସ୍କୁଲକୁ ଆସିବେ ? ବାବା କହିଥିଲେ- ନା, ସେ ଫେରିଲେ ହୁଏତ କେଉଁ କଲେଜରେ ଅଧାପନା କରି ପାରନ୍ତି । ଯାହା ହେଉ ଏ ଖବର ଟି ମୁଁ କ୍ଲାସ୍‌ରେ ଆଗରୁ ସାଙ୍ଗମାନଙ୍କୁ କହିଦେଇଥିଲି । ଆମମାନଙ୍କ ଭିତରେ ଏ ସବୁ ବିଷୟ ବେଶି ଆଲୋଚନା ମଧ୍ୟ ହେଉଥିଲା । ଦିନେ ଦୁଇଦିନ ଭିତରେ ସ୍କୁଲରେ ସାର୍‌ଙ୍କୁ ବିଦାୟ ସମ୍ବର୍ଦ୍ଧନା ପାଇଁ ସଭାଟିଏ ହୋଇଥିଲା । ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ଶିକ୍ଷକ ଓ ସମସ୍ତ ଛାତ୍ରଛାତ୍ରୀ ଏହି ସଭାରେ ଏକାଠି ହୋଇଥିଲେ । ସାର୍‌ଙ୍କ ବିଷୟରେ ବହୁତକିଛି କୁହାଗଲା । ସେଦିନ ଆମ କ୍ଲାସ୍‌ର କେତେକ ପିଲାମାନଙ୍କ ମନରେ ଉଠିଥିଲା ସେହି ପ୍ରଶ୍ନ ଲଣ୍ଡନରୁ ଫେରିଲେ ସାର୍ ପୁଣିଆସି ଆମ ସ୍କୁଲରେ ଯୋଗ ଦେବେନା ? ସାର୍‌ଙ୍କ ପାଠ ପଢ଼ାଇବା ଶୈଳୀକୁ କେହି ଭୁଲିପାରୁ ନଥିଲେ । ଆଜି ସେହି ପିଲାଦିନ କଥା ମୋର ଭାରି ମନେ ପଡୁଛି ।

ଲଣ୍ଡନରୁ ଫେରିବା ପରେ ସାର୍ 'ପଶ୍ଚିମ ପଥିକ' ନାଁରେ ଓଡ଼ିଆ ଭାଷାରେ ଖଣ୍ଡେ ବହି ଲେଖିଥିଲେ । ସେ ବହିଟି ବାବା ଘରକୁ ଆଣିଥିଲେ । ଆମେ ସବୁ ସେ ବହିଟି ପ୍ରାୟ ଘରେ ସମସ୍ତେ ଖୁସିରେ ପଢ଼ିଥିଲୁ । ଲଣ୍ଡନର ରାସ୍ତାଘାଟ ଲୋକମାନଙ୍କର ଚଳଣି, ଓ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନ ବିଷୟରେ ବହୁତ କଥା ସୁନ୍ଦର ଭାବରେ ବର୍ଣ୍ଣନା କରି ବେଶ୍ ସରଳ ଭାବରେ ଲେଖା ହୋଇଥିଲା । ବହିଟି ମୁଁ ତିନି, ଚାରିଥର ପଢ଼ି ଲଣ୍ଡନ ଯାଇ ବୁଲିଆସିବାକୁ ମୋର ଭାରି ମନ ହେଉଥିଲା ।

ସେ ଅନୁଗୁଳ 'ବେସିକ୍ ଟ୍ରେନିଂ କଲେଜ'ର ଅଧକ୍ଷ ଥିବାବେଳେ କଟକ ଆସିଲେ ଆମ ଘରକୁ ବାବାଙ୍କ ସାଙ୍ଗରେ ଦେଖା କରିବାକୁ ଆସନ୍ତି । ବାବାଙ୍କ ପ୍ରତି ତାଙ୍କର ବହୁତ ଶ୍ରଦ୍ଧା ଓ ସମ୍ମାନ ଥିଲା । ମୁଁ କେବେ ଘରକୁ ଗଲେ ତାଙ୍କ ବିଷୟରେ ଶୁଣେ । ବିଭିନ୍ନ କଲେଜ ପ୍ରଭୃତିରେ ଯୋଗଦେଇ ସେ କିଭଳି ସୁନାମ ଅର୍ଜନ କରିଥାଆନ୍ତି ସେସବୁ ଶୁଣେ, ଶିକ୍ଷାର ଉନ୍ନତି ଓ ପ୍ରସାର କରିବା ପାଇଁ କିଭଳି ଉଦ୍ୟମ ଥିଲା ଶୁଣିଲେ ବହୁତ ଖୁସି ଲାଗେ । ରାଧାନାଥ ଟ୍ରେନିଂ



କଲେଜର ବାର୍ଷିକ ଉତ୍ସବ ଓ ବିଭିନ୍ନ ସଭା ସମିତିରେ ଦୂରରୁ ମୁଁ କେତେଥର ତାଙ୍କୁ ଦେଖିଛି । କିନ୍ତୁ ସେଭଳି କଥାବାର୍ତ୍ତା ହେବାର ସୁଯୋଗ ପାଇନାହିଁ ।

ରାତି ସାଢ଼େ ଚାରିଟା ବେଳକୁ ପ୍ରାୟ ମିଶ୍ରବାବୁ ପ୍ରାତଃ ଭ୍ରମଣରେ ବାହାରି ଯାଆନ୍ତି । ଠିକ୍ ସେତିକିବେଳେ ସାର୍ ଓ ତାଙ୍କ ସ୍ତ୍ରୀ ଆମ ୬୧୪ଘର ସାମନା ଦେଇ ଆସନ୍ତି । ଅନେକଥର ମୁଁ ଫାଟକ ଖୋଲି ରାସ୍ତାକୁ ବାହାରିପଡ଼ି ସେମାନଙ୍କୁ ନମସ୍କାର ହୁଏ । ସେମାନଙ୍କ ଦେହ ବିଷୟରେ ଭଲମନ୍ଦ ଟିକେ ପଚାରେ, ଦୁହିଁଙ୍କ ସାଙ୍ଗରେ ଅଳ୍ପଟିକେ କଥାବାର୍ତ୍ତା ହୋଇ ଭାରି ଭଲଲାଗେ । ସାର୍‌ଙ୍କ ସାଙ୍ଗରେ ଦୁଇପଦ ଗପିଲାବେଳେ ମୁଁ ଅନୁଭବ କରେ ସତେ ଯେପରି ମୁଁ ଜଣେ ମହାପୁରୁଷଙ୍କ ସାଙ୍ଗରେ ଗପୁଛି । ଏଇଭଳି ଅଧିକାଂଶ ଦିନ ଆମର ଦେଖାହୁଏ । ସାର୍‌ଙ୍କର ସେହି ସ୍ନେହଶୀଳ କଥା- 'ମା' କେମିତି ଅଛ ? ଦେହ ଭଲ ଅଛି ତ ? ତୁମ ମା' ଏବେ କୋଉଠି ରହୁଛନ୍ତି ? ତାଙ୍କ ଦେହ ଭଲ ଅଛି ତ ?' କିନ୍ତୁ କିଛି ଦିନ ପରେ ସାର୍ ଆଉ ଏପଟକୁ ବେଶି ବୁଲିଆସନ୍ତି ନାହିଁ । ମଝିରେ ମଝିରେ ତାଙ୍କର ବିଭିନ୍ନ ପ୍ରକାର ଶରୀରର ଅସୁସ୍ଥତା ନେଇ ତାଙ୍କ ଘର ପାଖାପାଖିରେ ଟିକେ ବୁଲନ୍ତି ।

ସାରଙ୍କ ସ୍ତ୍ରୀ ଚାଲିଯିବାପରେ ସାର୍‌ଙ୍କ ବୁଲାବୁଲି ବହୁତ କମିଗଲା । କ୍ରମେ ତାଙ୍କର ବୁଲାବୁଲି ପ୍ରାୟ ବନ୍ଦ ହୋଇଗଲା । ମିଶ୍ରବାବୁ କେବେ ଗଲେ ମୁଁ ତାଙ୍କଠାରୁ ସାର୍‌ଙ୍କ ଖବର ପ୍ରାୟ ଶୁଣେ । ଆଉ କେହି ଚିହ୍ନାଜଣା ଶୁଣା ଲୋକ ମାନଙ୍କ ଠାରୁ ମଧ୍ୟ ଶୁଣେ ।

ପ୍ରାୟ ପାଞ୍ଚ ଛଅମାସ ତଳେ ମୁଁ ସାରଙ୍କ ଘରକୁ ମିଶ୍ରବାବୁଙ୍କ ସହିତ ଯାଇଥିଲି । ମୋର ନିଜ ଲେଖା ପ୍ରକାଶିତ ଶିଶୁସାହିତ୍ୟ 'ପିଲାଙ୍କ ବଣଭୋଜି' ନାମକ ବହିଟିଏ ସାର୍‌ଙ୍କ ହାତରେ ଦେଲି । ବହିଟି ପାଇ ସାର୍ ଅତ୍ୟନ୍ତ ଖୁସି ହେଲେ । ମୋର 'ଶିଶୁସାହିତ୍ୟ' ଲେଖା ଲେଖି ବିଷୟରେ ପଚାରି ବୁଝିଲେ । ବହିଟିକୁ ହାତରେ ଏପାଖ, ସେପାଖ କରି ଦେଖୁଥାଆନ୍ତି । ତାପରେ ତାଙ୍କ ବୋହୁଙ୍କୁ କହିଲେ- 'ସମୟ ପାଇଲେ ବହିଟି ମୋତେ ପୁରା ପଢ଼ି ଶୁଣାଇବ ।' ସତରେ ବହିଟି ତାଙ୍କୁ ବୋହୁ ପୁରାପଢ଼ି ଶୁଣାଇଥିଲେ ତାଙ୍କ ସୁବିଧାରେ । ଲେଖାଟି ସାର୍‌ଙ୍କୁ ବହୁତ ଭଲ ଲାଗିଥିଲା । ସେ ମିଶ୍ରବାବୁଙ୍କୁ କହିଥିଲେ । ଖବର ଜାଣି ମୁଁ ବହୁତ ଖୁସି ହେଲି ।

ଏସବୁ ଘଟଣା ଆଜି ବାରମ୍ୱାର ମନେ ପଡୁଛି ଓ ସାର୍‌ଙ୍କର ସେହି ଶାନ୍ତ, ସରଳ, ସ୍ନେହଶୀଳ କଥା ସବୁ କାନ ପାଖରେ ଗୁଞ୍ଜରୀ ଉଠୁଛି । ସାର୍ ଆଜି ସ୍ୱଦେହରେ ଶୂନ୍ୟମନ୍ଦିରକୁ ଯାତ୍ରା କରିଛନ୍ତି । ଏହି ଅମ୍ଳାନ ପୁରୁଷ ଆମ ୬୧୪ ଘର ଆଗଦେଇ କିଭଳି ଆଗେ, ଆଗେ ସାର୍ ଓ ତାଙ୍କଠାରୁ ଟିକେ ପଛରେ ଟିକେ ଦୂରରେ ତାଙ୍କର ସ୍ତ୍ରୀ କିପରି ଯାଆନ୍ତି, ସେହି ଦୃଶ୍ୟର ସ୍ମୃତି ଆସି ମୋର ବାରମ୍ୱାର ମନେପଡୁଛି । ସେହି ସବୁ ସ୍ମୃତି ମୋର ଆଜି ସାର୍‌ଙ୍କ ପାଇଁ ବିଶେଷ ଶ୍ରଦ୍ଧାଞ୍ଜଳୀ ।

**୬୧୪, ସହିଦନଗର, ଭୁବନେଶ୍ୱର-୭**



ଡ. ଅରୁଣଚନ୍ଦ୍ର ସେଠୀଙ୍କ ଦ୍ୱାରା ଲିଖିତ ପୁସ୍ତକ 'ନିଃସପତ୍ନ ଶତ୍ରୁଘ୍ନ ନାଥ'ର ଉନ୍ମୋଚନ ଅବସରରେ



# ଜଣେ ମହାନ୍ ସନ୍ଥଙ୍କ ବିୟୋଗରେ ଅକିଞ୍ଚନର ସ୍ମୃତି ତର୍ପଣ

ସରୋଜିନୀ ପରିଜା

ସେ ମହାପୁରୁଷ ଜଣେ ସାଧାରଣ ମଣିଷ ପରି ଦିଶୁଥିଲେ ମଧ୍ୟ ତାଙ୍କୁ ହିଁ ପ୍ରକୃତରେ ଜଣେ ସନ୍ଥ କହିଲେ ଠିକ୍ ହେବ । ସେ ଥିଲେ ସମସ୍ତଙ୍କର ପୂଅ ଓ ଜଣେ ଅତ୍ୟନ୍ତ ମାନବ ପ୍ରେମୀ ଆତ୍ମା । ତାଙ୍କଠାରୁ ବୟସରେ ସାନ ଯେକୌଣସି ଲୋକ ସହିତ ସାକ୍ଷାତ୍‌ରେ ତାଙ୍କର ସମ୍ବୋଧନ ଥାଏ 'ବାପାରେ' ନଚେତ୍ 'ମାଆରେ' । ଏହା ହୃଦୟର ଗଭୀରତାରୁ ଉଚ୍ଛୁଳି ଆସୁଥିବା ଅମାପ ଶ୍ରଦ୍ଧାର ଆଭାସ ମାତ୍ର ।

ସେହିଭଳି ଗୋଟିଏ ସ୍ମୃତି ଆଜି ସୁଦ୍ଧା ମୋ ମନକୁ ଆନ୍ଦୋଳିତ କରିଦିଏ ଓ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଏ । ମୁଁ Women's Training School, Cuttack ରେ ଶିକ୍ଷୟିତ୍ରୀ ଥାଏ ଓ ହଷ୍ଟେଲ ଦାୟିତ୍ୱରେ ମଧ୍ୟ ଥାଏ । ଥରେ ଟ୍ରେନିଂ ପିଲାଙ୍କୁ ନେଇ ଏକ୍ସକରସନ୍‌ରେ ହୀରାକୁଦ ବନ୍ଧ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଦେଖାଇବାକୁ ସମ୍ବଲପୁର ନେଇ ଯାଇଥାଉ । ସେତେବେଳେ ସାର୍ ଦିବଂଗତ ପ୍ରଫେସର ଶତ୍ରୁଘ୍ନ ନାଥ ଥାଆନ୍ତି ଅନୁଗୋଳ ଟ୍ରେନିଂ କଲେଜର ଅଧ୍ୟକ୍ଷ । ପିଲାମାନଙ୍କ ପାଇଁ ସେଠାରେ ଆତିଥେୟତାର ଯୋଜନା ହୋଇଥାଏ । ଦ୍ୱିପ୍ରହରରେ ସମସ୍ତେ ପହଞ୍ଚିଲୁ । ଗୁରୁଙ୍କର ଗୁରୁଶ୍ରେଷ୍ଠ ନାନା ବ୍ୟଞ୍ଜନାଦି ସହ ଖାଦ୍ୟ ପ୍ରସ୍ତୁତ କରାଇ ଅପେକ୍ଷା କରିଥାଆନ୍ତି । ଖାଇବାବେଳେ ସମସ୍ତଙ୍କୁ ଗୋଟିଗୋଟି କରି ପଚାରି ବୁଝୁଥାଆନ୍ତି । ମୋତେ ଡାଲି ଖୁବ୍ ଭଲ ଲାଗିବାରୁ ଦ୍ୱିତୀୟ ଥର ଡାଲି ମାଗି ଖାଇ ଥିଲି । ସେହି ଦିନୁ ସେ ମୋତେ 'ମୋର ଡାଲିଖାଇ ଝିଅ' ବୋଲି ଡାକନ୍ତି । ଯାହାକୁ ଦେଖନ୍ତି ମୋତେ ସହି କଥାରେହିଁ ଚିହ୍ନା କରାନ୍ତି, କହନ୍ତି- 'ଏ ମୋର ଡାଲିଖାଇ ଝିଅ' ।

ସାରଙ୍କର ବଡ଼ଝିଅ ମୋ ପୁତୁରା ଶରତର ଘନିଷ୍ଠ ସାଙ୍ଗ ଶ୍ରୀମାନ୍ ଡକ୍ଟର କୈଳାସ ନାଥଶର୍ମାଙ୍କୁ ବିବାହ କଲେ ଏବଂ ତାଙ୍କର ଅନ୍ୟ ଝିଅ ଦୁଇଜଣ ଆମର ଛାତ୍ରୀ ଥିଲେ । ତେଣୁ ସାରଙ୍କ ସହିତ ସଂପର୍କ ଆଉ ଟିକେ ଘନିଷ୍ଠ ହୋଇଗଲା ଶେଷ ଜୀବନ ବେଳକୁ ସହିଦନଗରରେ ସାରଙ୍କ ଘର ପାଖରେ ରହିବାର ସୁଯୋଗ ମିଳିଲା । ପ୍ରାତଃ ଭ୍ରମଣରେ ସାର୍ ଗଲାବେଳେ ପ୍ରାୟ ଦେଖା ହୁଅନ୍ତି । କହନ୍ତି- ମାରେ କେମିତି ଅଛୁ ? ଏଇ ପଦକ କଥା କି ମିଠା ଓ ମମତା ଭରା । ମୋ ଜୀବନରେ ଆଉ କାହାଠାରୁ ଏପ୍ରକାର ବ୍ୟବହାର ପାଇବାର ମନେ ହେଉନି । କେତେଥର ତାଙ୍କ ଘରକୁ ଯାଇଛି । ନିଜର ଦେହ ଭଲ ନଥିବ । ତଥାପି ବୋହୂଙ୍କୁ ଡାକି କହିବେ- 'ମାରେ, ମୋ ଡାଲି ଖାଇ ଝିଅକୁ କଣ ଟିକେ ଦିଅ ତ ।' ମନେ ହୁଏ ବଡ଼ ବୋହୂଙ୍କର ଯେମିତି ସେ ଥିଲେ ବଡ଼ ପୁଅ ।

ସେହି ମହାତ୍ମାଙ୍କର ଅନାବିଳ ସ୍ନେହ ଶ୍ରଦ୍ଧା ମନକୁ ଆସିଲେ ଆଖିରେ ଲୁହ ଆସେ, ମନ ତାଙ୍କର ପାଦ ତଳକୁ ଆପାଆପେ ଚାଲିଯାଏ । କେବଳ ମୋର ନୁହେଁ, ମୋରି ପରି ଶହଶହ ଲୋକଙ୍କର ଯିଏ ଦିନେ ତାଙ୍କର ସାନ୍ନିଧ୍ୟ ଲାଭ କରିଥିବ । ଛୋଟିଆ ଗେରୁଆ ବସ୍ତ୍ର ପିନ୍ଧା ଶାନ୍ତ ହସ ଭରା ଚେହେରା, ତାଙ୍କର ମନର ସ୍ୱଚ୍ଛତା ଓ ଦିବ୍ୟଭାବକୁ ବେଶ୍ ସୁଚାଇ ଦିଏ ।

ତାଙ୍କ ସହିତ ଶତ୍ରୁତା କାହାର ନଥାଏ । ଶତ୍ରୁତା କରିବାକୁ ଆସିବା ଲୋକ ମଧ୍ୟ କେବଳ ଦର୍ଶନରେ ଓ 'ବାପା' ଡାକରେ ତା'ର ଶତ୍ରୁତାକୁ ବି ଭୁଲିଯାଏ । ସେ ପ୍ରକୃତରେ ହିଁ ଥିଲେ 'ଶତ୍ରୁଘ୍ନ' । ସେହି ମହାନ୍ ଅର୍ଥରେ ଅର୍ଥାତ୍ ଶତ୍ରୁକୁ ହତ କରି ନୁହେଁ । ଶତ୍ରୁତାକୁ ହତ କରି ।

ସେହି ଅମର ଆତ୍ମା ମହିମା ଧର୍ମର ପ୍ରକୃତ 'ବ୍ରହ୍ମାବଧୂ'ରେ ଜୀବନଯାପନ କରୁଥିଲେ ଓ ବୟାନଟି ଶରତ, ବସନ୍ତ ଶେଷରେ ଇହଲୀଳା ତ୍ୟାଗ କରି ପରମାତ୍ମାଙ୍କଠାରେ ଲୀନ ହୋଇଗଲେ ।

ଆମ ସମସ୍ତଙ୍କର ସ୍ମୃତି ଭଣ୍ଡାରରେ ତାଙ୍କ ଜୀବନର ଅମଳିନ ଆଦର୍ଶ କାଳାତୀତ ହୋଇ ସାଇତା ରହିଥାଉ । ଏହି ଅକିଞ୍ଚନ ତାଙ୍କର ଅମର ଆତ୍ମାପ୍ରତି ଗଭୀର ଶ୍ରଦ୍ଧା ଓ ଭକ୍ତିପୂର୍ଣ୍ଣ ପ୍ରଣତୀ ଜଣାଇ ଈଶ୍ୱରଙ୍କ ପାଖେ ଏତିକି ପ୍ରାର୍ଥନା ଯେ ସାରଙ୍କ ପରିବାରର ବଡ଼ବୋହୂଙ୍କ ସମେତ ସମସ୍ତ ସଦସ୍ୟ ତଥା ପରିଜନଙ୍କ ପ୍ରଭୁ ଏହି ବିୟୋଗାନ୍ତକ ଦାରୁଣ ଦୁଃଖ ସହିବାକୁ ଶକ୍ତି ଦିଅନ୍ତୁ ।



# ପ୍ରଫେସର ଶତ୍ରୁଘ୍ନ ନାଥ : ଏକ ସ୍ମୃତିଚାରଣ

**ରମାକାନ୍ତ ରାଉତ**

ଆମ ସମସ୍ତଙ୍କର ଅତି ପ୍ରିୟ ପ୍ରଫେସର ଶତ୍ରୁଘ୍ନ ନାଥ ଆଉ ନାହାନ୍ତି । ଗତ ୧୦ ତାରିଖରେ ସେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ଓଡ଼ିଶାରେ ସୃଷ୍ଟି ହେଲା ଏକ ବିରାଟ ଶୂନ୍ୟସ୍ଥାନ । ସେ ଶିକ୍ଷା ଜଗତରେ ଥିଲେ ସବୁଠୁଁ ବିର୍ଷିୟାନ୍, ସବୁଠୁଁ ବିଜ୍ଞ ଓ ସବୁଠୁଁ ସ୍ଥିତପ୍ରଜ୍ଞ ଶିକ୍ଷାବିତ୍, ଜଣେ ମହିୟାନ୍ ବ୍ୟକ୍ତିତ୍ୱ । ଅନ୍ୟ କଥାରେ ସେ ଥିଲେ କୁଳବୃଦ୍ଧ ପିତାମହ ଭୀଷ୍ମ । ଭୀଷ୍ମ ଆଜି ଇଚ୍ଛା ମୃତ୍ୟୁ ବରି ନେଇଛି । ଯୋଉଥି ପାଇଁ ଉଭୟ ପାଣ୍ଡବ ଓ କୌରବ ଶିବିରରେ ଶୋକର କରାଳଛାଇ । ସତରେ ତାଙ୍କର କେହି ଶତ୍ରୁ ନଥିଲେ । ସମସ୍ତଙ୍କର ସେଥିଲେ ମୁରବୀ, ସବୁରି ଅଭିଭାବକ, ଶୁଭ ଚିନ୍ତକ ଓ ପଥ ପ୍ରଦର୍ଶକ । ସେଇ ମହାନ ଆତ୍ମାର ଆଜି ବିଳୟ ଘଟିଛି । ଆତ୍ମା ଛାଡ଼ି ଯାଇଛି ମାଟି ପିଣ୍ଡକୁ । ସତ୍ୟନଗର ଶ୍ମଶାନରେ ସେ ସବୁ ପଞ୍ଚତ୍ୱ ପ୍ରାପ୍ତି ହୋଇ ମିଳେଇ ଯାଇଛି ମହାଜାଗତିକ ଇଥର ରେଣୁରେ । ଇଏତ ଜଗତର ନିୟମ, ବିଧିର ବିଧାନ । ତାକୁ ଅନ୍ୟଥା କରିବାର ଶକ୍ତି କା'ର । ତାହା ହିଁ ହୋଇଛି । ଆମ ସମସ୍ତଙ୍କ ଦୃଷ୍ଟିରେ ତାହା ହୁଏତ ମୃତ୍ୟୁ । କିନ୍ତୁ କବିଙ୍କ ଭାଷାରେ- 'ଯାଇଛି ଅମର ଧାମେ କୁହାସିନା ମୃତ୍ୟୁ ନାମେ / ବାହୁଡ଼ା ବିଜୟ ସେତ ନୁହଁଇ ମରଣ ।' ମହାରଥୀ ଭୀଷ୍ମ ଜୀବନ ସଂଗ୍ରାମରେ ଯୁଝିଯୁଝି ଆଜି ବିଶ୍ରାମ ନେଇଛି । ଚିର ବିଶ୍ରାମ ।

ଓଡ଼ିଶା ଶିକ୍ଷା ଜଗତରେ ଏମିତି ଲୋକ ନାହାନ୍ତି ଯିଏ ପ୍ରଫେସର ନାଥଙ୍କୁ ନଜାଣେ । ଅଧିକାଂଶ ତାଙ୍କର ଛାତ୍ର । କାରଣ ବହୁ ଦଶନ୍ଧି ଧରି ସେ ଶିକ୍ଷାଜଗତ, ବିଶେଷତଃ ତାଲିମ ପ୍ରତିଷ୍ଠାନରେ ସେ କାର୍ଯ୍ୟ କରିଛନ୍ତି । ମୌଳିକ ଶିକ୍ଷା ଓ ଗାନ୍ଧି ଦର୍ଶନକୁ ସେ ଜୀବନର ବ୍ରତ ରୂପେ ଗ୍ରହଣ କରି ଆସିଛନ୍ତି । ସେ ଟ୍ରେନିଂ କଲେଜରେ ଥିବାବେଳେ ଗୁରୁଛାତ୍ର ମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲେ ନିଜ କାମ ନିଜ ହାତରେ କରିବାକୁ । ସେ କରିଦେଖାଇ ଦେଉଥିଲେ ବି । ସେ କର୍ମବୀର ଥିଲେ, ବାକ୍ୟବୀର ନଥିଲେ । ତେଣୁ ଛାତ୍ରମାନେ ସଫେଇ, ପାଇଖାନା ସଫା, ରୋଷେଇ ଆଦି ପାଳିକରି ନିଜ ହାତରେ ନିର୍ବାହ କରୁଥିଲେ । ଜୀବନସାରା ସେ ଆଣ୍ଠୁ ନଲୁଚା ଧୋତି ଓ ଖଦଡ଼ ଜାମା ପିନ୍ଧୁଥିଲେ । ଅତି ସରଳ ଜୀବନଯାପନ କରୁଥିଲେ । ଖୁବ୍ ଦରଦ ଭରା ମାନବିକ ହୃଦୟ ଅନ୍ୟ ପାଇଁ ବହୁ ସମ୍ବେଦନା ଭର୍ତ୍ତି ହେଇଥିଲା, ଅଶେଷ କରୁଣା । ଦେଖାହେଲେ ପଚାରନ୍ତି ବାପା, ଭଲ ଅଛ ? ଘରକୁ ଗଲେ କହନ୍ତି, ବାପା ବସ । ଖରାରେ ଆସିଛ । ଟିକିଏ ପଣା ଆଣୁଛି । ନିଜ ହାତରେ ଲେମ୍ବୁ ଚିନିର ସରବତ ପରସି ଦିଅନ୍ତି । କେଡ଼େ ସ୍ନେହଶୀଳ ଦରଦ ଭରା କଥା ।

ସେ ଅନୁଗୁଳ ଟ୍ରେନିଂ କଲେଜରେ ପ୍ରିନ୍‌ସପାଲ୍ ଥିବାବେଳେ ଏମିତି ଏକ ଘଟଣା ଘଟିଲା ଯାହା ନଦେଖିଲେ ତାଙ୍କ ବ୍ୟକ୍ତିତ୍ୱର କିଛିଟା ଅଭାବ ରହିଯିବ । ତାଙ୍କ ଗାଈଟି ବେମାର ଥିଲା । କଲେଜ ଯିବାବେଳେ ମାଡ଼ାମ୍ କହିଥିଲେ ଜଣେ ପିଅନକୁ ପଠାଇବ । ଗାଈକି ପଶୁଡାକ୍ତରଖାନା ନେଇଯିବ । ଅପ୍ରେଲ ମାସ ଉଦୁଉଦିଆ ଖରା । ମଧ୍ୟାହ୍ନ ୧୨ଟା ହେବ । ସାର୍ ଫେରିଲେ । ମାଡ଼ାମ୍ ଟିକିଏ ବିରକ୍ତ ହେଲେ । ଗାଈଟା ଏମିତି ପଡ଼ିଛି । କିଛି ଖାଉନି । କାହାକୁ ପଠାଇଲନି ! "ହଉହଉ । ପିଅନ ହେଲେ ବି ତାର ତ ତାର ନିଜର ଘରଦ୍ୱାର, ଦୁଃଖଧନ୍ଦା ଅଛି ।" ଏହା କହି ନିଜେ ଗାଈଟି ଧରି ପଶୁ ଡାକ୍ତରଖାନା ଗଲେ । ଡାକ୍ତରଖାନା ବନ୍ଦ ହେବା ଉପରେ । ଡାକ୍ତର ବିରକ୍ତ ହୋଇ କହିଲେ, 'ଏ ବୁଢ଼ା ତମର ସମୟ ଅସମୟ ନାହିଁ । କେତେ ସମୟ ହେଲାଣି ?' 'ବାପା ଟିକିଏ ଦେଖିଦିଅ ।' ଚିକିତ୍ସା ପରେ ଖାତାଦେଲେ ଦସ୍ତଖତ ପାଇଁ । ନାମ ଓ ଠିକଣା ଦେଖି ଡାକ୍ତର ବିବ୍ରତ । କ୍ଷମା ମାଗି କହିଲେ, 'ସାର୍ ଜାଣିପାରିଲି ନାହିଁ । ଭୁଲ ହୋଇଗଲା ।' ପ୍ରଫେସର ନାଥ ତାଙ୍କ ସ୍ୱଭାବ ସୁଲଭ ଢ଼ଙ୍ଗରେ କହିଲେ, 'ନାହିଁ, ବାପା ତମେତ ମତେ ସାହାଯ୍ୟ କଲ ଏ ଅବେଳରେ । ବରଂ ମୁଁ ତମ ପାଖରେ କୃତଜ୍ଞ ।' ଏହା କହି ସେ ଫେରିଲେ କ୍ୱାଟରର୍ସକୁ । ଇଏ ହେଉଛି ତାଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ।

ପ୍ରଫେସର ନାଥଙ୍କର ମୁଁ ସିଧା ସଳଖ ଛାତ୍ର ନଥିଲି । ମୁଁ ରିଜିଓନାଲ କଲେଜରେ ୪ବର୍ଷିଆ ପାଠ୍ୟକ୍ରମର ଛାତ୍ର । ସେ କେତେବେଳେ କିମିତି ଗୋଟିଏ ଗୋଟିଏ କ୍ଲାସ ନିଅନ୍ତି ସେଇ ଖଦଡ଼ ପୋଷାକ ଛତାଟିଏ ହାତରେ ଥାଏ । କଥା ଯିମିତି ସରଳ ସାଧାସିଧା, ଲେଖା ସିମିତି ଅତି ଶୃଙ୍ଖଳିତ, ସଂଯମ ଶିକ୍ଷାଦାନ ଶୈଳୀ । କି ସ୍ପଷ୍ଟ ତାଙ୍କ ଅଭିବ୍ୟକ୍ତି । ଭାଗ୍ୟରେ ଜୁଟିନାହିଁ ବହୁଦିନ ଧରି ତାଙ୍କ ଶ୍ରେଣୀରେ ବସି ସେ ଶିକ୍ଷାଦାନକୁ ଆକଣ୍ଠ ପାନ କରିବା ପାଇଁ । ମୁଁ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଜନସଂଖ୍ୟା ଶିକ୍ଷା ଚାକିରୀ ପାଇଁ ଜଣେ ପ୍ରାର୍ଥୀ ଥିଲି । ପ୍ରଫେସର ନାଥ ସେତେବେଳେ ଚେୟାରମ୍ୟାନ ଥିଲେ । ମୁଁ ସିଲେକ୍ଟ ହେଲି ଓ ଜଏନ କଲି । ସେ ମୋତେ କହିଥିବାର



ମୋର ବେଶ୍ ମନେ ପଡ଼ୁଛି । ରମାକାନ୍ତ ବାବୁ ! ତୁମକୁ ମନୋନୟନ କରିବାରେ ମୋ ସମେତ ସବୁ ବିଗ୍ଭରପତି ଏକମତ ହେଲେ । କିନ୍ତୁ ଏହା ସତ ଯେ ତମକୁ ଯେଉଁ ବିଭାଗର ଦାୟିତ୍ୱ ଦିଆଯାଇଛି ସେଥିରେ ତମର ସେତେ ଅଭିଜ୍ଞତା ନାହିଁ । ତେଣୁ ତମକୁ କଠୋର ପରିଶ୍ରମ କରି ନିଜକୁ ସେ ପଦପାଇଁ ଉପଯୁକ୍ତ ପ୍ରମାଣିତ କରିବାକୁ ପଡ଼ିବ । ଏହା ମୁଁ ଆଶା ଓ ବିଶ୍ୱାସ କରୁଛି । ଏହା ମୋ ପାଇଁ ଗୁରୁବାକ୍ୟ ଥିଲା । ମୋର ସାଢ଼େ ତିନିବର୍ଷ ରହଣି କାଳରେ ତାଙ୍କ ଉପଦେଶ ପାଳନ ଦିଗରେ ଚେଷ୍ଟା କରିଛି ।

ପ୍ରଫେସର ନାଥ ରାଧାନାଥ ଟ୍ରେନିଂ କଲେଜ ଅଧ୍ୟକ୍ଷ ଥାନ୍ତି । ସେତେବେଳେ ଭଦ୍ରକ କଲେଜରେ କେତେକ ବିଶୃଙ୍ଖଳା ଦେଖାଦେଲା । ଅଧ୍ୟକ୍ଷ ଥାନ୍ତି ସ୍ୱର୍ଗତ ବଳରାମ ସାହୁ ଓ କଲେଜ ପରିଗ୍ଭଳନା କମିଟି ସଂପାଦକ ଥାନ୍ତି ନରେନ୍ଦ୍ର ପ୍ରସାଦ ଦାସ । ଅଧ୍ୟକ୍ଷ ଅଧିକ ସ୍ୱାଧୀନ ଓ ସ୍ୱେଚ୍ଛାଗ୍ଭରୀ ହେବାର ଉପକ୍ରମ କଲେ । ଫଳରେ ଅଧ୍ୟକ୍ଷ ଓ କମିଟି ମଧ୍ୟରେ ବିରାଟ ଫାଙ୍କ ଦେଖା ଦେଲା । ସେତେବେଳେ ଭଦ୍ରକ ହାଇସ୍କୁଲର ସେହି ପ୍ରବାଦପୁରୁଷ ପ୍ରଧାନଶିକ୍ଷକ କଲେଜ କମିଟି ସଭ୍ୟ । ଭାରି ସ୍ପଷ୍ଟବାଦୀ ଓ ନିର୍ଭୀକ । ବିଶୃଙ୍ଖଳାକୁ ସେ ପ୍ରଶ୍ରୟ ଦିଅନ୍ତି ନାହିଁ । ସେ କମିଟିର ଏକ ଅଧିବେଶନରେ ମନ୍ତବ୍ୟ ଦେଲେ- This college has turned into a devils-den. ଅଧ୍ୟକ୍ଷ ଏହାର ତୀବ୍ର ପ୍ରତିବାଦ କରି କହିଲେ, 'It is a very harsh comment and is untrue.' ଗୋକୁଳାନନ୍ଦ ବାବୁ ପୁନଶ୍ଚ କହିଲେ, 'I repeat my statement. The college has become a devils-den'. ଏକ ସାନ୍ଦ୍ରନୀରବତା ଦେଖାଦେଲା ।

କିନ୍ତୁ ପରିସ୍ଥିତି ସୁଧୁରିଲା ନାହିଁ, ବରଂ ଶୋଚନୀୟ ହେଲା । ଛାତ୍ର ଆନ୍ଦୋଳନ ବାତାବରଣକୁ ତୀବ୍ରତର କଲା । କମିଟି ଅଧ୍ୟକ୍ଷଙ୍କୁ ବହିଷ୍କାର କଲେ । ଆନ୍ଦୋଳନ ତୀବ୍ରହେଲା । କୌଣସି ବରିଷ୍ଠ ଅଧ୍ୟାପକ ଦାୟିତ୍ୱ ନେଲେ ନାହିଁ । ଏକରକମ ଅଚଳାବସ୍ଥା ସୃଷ୍ଟି ହେଲା । ପରିଗ୍ଭଳନା କମିଟି ଓ ଅଞ୍ଚଳରେ ବିଶିଷ୍ଟ ବ୍ୟକ୍ତି ବିଶେଷ ଚିନ୍ତିତ ହୋଇ ପଡ଼ିଲେ କଲେଜର ଏ ଅଶାନ୍ତ ବାତାବରଣକୁ ଗ୍ଭହିଁ । ଡକ୍ଟର ହରେକୃଷ୍ଣ ମହତାବ ବହୁ ଚିନ୍ତା କରି ଶତ୍ରୁଘ୍ନ ନାଥଙ୍କୁ ଅଧ୍ୟକ୍ଷ ଭାବରେ ଅବସ୍ଥାପିତ କରିବାର ପ୍ରସ୍ତାବ ଦେଲେ । ଗୁରୁଦେବ ଗୋକୁଳାନନ୍ଦ ନାୟକ ଏହାକୁ ଅନୁମୋଦନ କଲେ । ସମସ୍ତଙ୍କ ଦୃଷ୍ଟି କେନ୍ଦ୍ରୀଭୂତ ହେଲା ପ୍ରଫେସର ନାଥଙ୍କ ଉପରେ । ସେ ଆଶା, ଭରସା ଓ ବିଶ୍ୱାସ ଥିଲା ଜନତାର । ସରକାରଙ୍କୁ ଲେଖାଯାଇ ତାଙ୍କୁ ଡେପୁଟେସନ୍‌ରେ ଅଧ୍ୟକ୍ଷଭାବେ ଅବସ୍ଥାପିତ କରାଗଲା । ବାତାବରଣକୁ ସେ ଆୟତ୍ତ କରିନେଲେ । ଶାନ୍ତି ପ୍ରତିଷ୍ଠା ପାଇଲା । ପ୍ରଫେସର ନାଥଙ୍କ ବ୍ୟକ୍ତିତ୍ୱ ସଚ୍ଚୋଟ ପଣିଆ, ନିଷ୍ଠା, ଦକ୍ଷତା ଓ ପାଣ୍ଡିତ୍ୟ ନିକଟରେ ସମସ୍ତେ ହାର ମାନିଲେ । ଛାତ୍ର ଆନ୍ଦୋଳନ ପ୍ରତ୍ୟାହୃତ ହେଲା । ଏକ ସ୍ୱାଭାବିକ ଶୈକ୍ଷିକ ବାତାବରଣ ଅଳ୍ପଦିନ ମଧ୍ୟରେ ଫେରି ଆସିଲା । ସରକାର କଲେଜର ପରିଗ୍ଭଳନା ଭାର ଗ୍ରହଣ କଲେ । ଏହା ସମ୍ଭବ ହେଲା କେବଳ ପ୍ରଫେସର ନାଥଙ୍କ ପାଇଁ ।

ମୋର ବିନମ୍ର କୃତଜ୍ଞତା ସେ ମହାନ ବ୍ୟକ୍ତିତ୍ୱଙ୍କୁ । ଆଜି ତାଙ୍କ ଅବର୍ତ୍ତମାନରେ ଅଶ୍ରୁତର୍ପଣ କରୁଛି । ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି ।

ଘରନଂ- ୧୧୭୫/୩୨୦୩
ଲକ୍ଷ୍ମୀସାଗର ଉପରସାହି, ଭୁବନେଶ୍ୱର-୬



ଛାତ୍ରଛାତ୍ରୀ ଥିଲେ ତାଙ୍କର ଅତି ପ୍ରିୟ



ରାଜଭବନରେ ପୂର୍ବତନ ରାଷ୍ଟ୍ରପତି
ଡ. ଶଙ୍କରଦୟାଲ ଶର୍ମାଙ୍କ ସହ



ପୂର୍ବତନ ମନ୍ତ୍ରୀ ଜଗନ୍ନାଥ ପଟ୍ଟନାୟକ ଓ ପୂର୍ବତନ ସାଂସଦ
ଅନନ୍ତ ପ୍ରସାଦ ସେଠୀ ପ୍ରଫେସର ନାଥଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି



ବିଶିଷ୍ଟ ସମାଜସେବୀ ଅନ୍ନଦା ପ୍ରସାଦ ରାୟ
ପ୍ରଫେସର ନାଥଙ୍କୁ ସମ୍ମାନୀତ କରୁଛନ୍ତି



ସମ୍ମାନଜନକ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରଦାନ
ଅବସରରେ ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ




ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ପ୍ରଫେସର ନାଥଙ୍କୁ 'ଉତ୍କଳ ରତ୍ନ ସମ୍ମାନ' ପ୍ରଦାନ
କରୁଛନ୍ତି ଭାରତର ପୂର୍ବତନ ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ର




ନବବର୍ଷ ଅବସରରେ ନାଗରକ ସମ୍ବର୍ଦ୍ଧନା

ପ୍ରଫେସର ଶତ୍ରୁଘ୍ନ ନାଥ ଫାଉଣ୍ଡେସନ୍ ତରଫରୁ
ଆୟୋଜିତ ପ୍ରଫେସର ନାଥଙ୍କର
ଜୟନ୍ତୀ ପାଳନ ଅବସରରେ
























କେତେବେଳେ ଶିକ୍ଷକ ତ କେତେବେଳେ ଚଷା, ଆଉ କେତେବେଳେ ଦେଖିବାକୁ ମିଳୁଥିଲା ତାଙ୍କୁ ଜନ ସେବା ଓ ସାଂଗଠନିକ କାର୍ଯ୍ୟରେ । ପରିବାରର ହସ ଖୁସି ଭିତରେ ବି ପୁତ୍ରବଧୂ ଓ ନାତିନାତୁଣୀଙ୍କ ସହ ସେ ହଜି ଯାଉଥିଲେ, ଜଣା ହେଉନଥିଲା ତାଙ୍କ ସ୍ନେହଶ୍ରଦ୍ଧା ଓ ଅନ୍ତରର ଭକ୍ତି ପାଇବା ।



# ତୃତୀୟ ପୁତ୍ରର ଶ୍ରଦ୍ଧାନିବେଦନ

**ଡା. ଅରୁଣ ଚନ୍ଦ୍ର ସେଠୀ**

୧୯୬୯ ମସିହା ନଭେମ୍ବର ମାସର କଥା । ଭଦ୍ରକ ମହାବିଦ୍ୟାଳୟର ଗଣ୍ଡଗୋଳିଆ ଅବସ୍ଥା, ଅଧ୍ୟାୟୀ, ଅଧ୍ୟାପକ, ଅଧକ୍ଷ ପରିଚାଳନା ସମିତି ମଧ୍ୟରେ ପ୍ରବଳ ଅଶାନ୍ତି, ବିକ୍ଷୋଭ, ସଂଘର୍ଷ । ଶିକ୍ଷାଦାନ ଓ ଦୈନନ୍ଦିନ ପରିଚାଳନାରେ ଅରାଜକତା । ପକ୍ଷାଘାତ ରୋଗୀପରି ମହାବିଦ୍ୟାଳୟର ଅବସ୍ଥା ସେତେବେଳକୁ ଅତିଶୟ ସଂକଟମୟ ।

ଏପରି ସ୍ଥଳରେ ପରିଚାଳନା ସମିତି ଅନୁଷ୍ଠାନର ହିତ ଦୃଷ୍ଟିରୁ ଡଃ. ମହତାବଙ୍କ ପରାମର୍ଶ କ୍ରମେ ପ୍ରଫେସର ଶତ୍ରୁଘ୍ନ ନାଥଙ୍କୁ ଅଧକ୍ଷ ପଦ ସମ୍ଭାଳିବା ପାଇଁ ଅନୁରୋଧ କରିଥିଲେ । ସେତେବେଳକୁ ସେ ରାଧାନାଥ ଶିକ୍ଷକ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧକ୍ଷ ଥାଆନ୍ତି । ଚାକିରି ଜୀବନର ଶେଷ ପର୍ଯ୍ୟାୟରେ ଏପରି ଜଟିଳ ଓ ଗୁରୁ ଦାୟିତ୍ୱ ସମ୍ଭାଳିବା ପାଇଁ ଅନିଚ୍ଛା ଥିଲେ ହେଁ ନିଜ ଜନ୍ମମାଟିରେ ପ୍ରତିଷ୍ଠିତ ଏହି ମହାବିଦ୍ୟାଳୟକୁ ସଂକଟମୟ ପରିସ୍ଥିତିରୁ ନିଜର ପ୍ରଜ୍ଞା ଓ ଅଭିଜ୍ଞତା ଫଳରେ କିଛିଟା ସୁଧାରି ଆଣିବା ଏକ ନୈତିକ ଦାୟିତ୍ୱ ବୋଲି ଅନୁଭବ କରି ସେ ବହୁ ଅସୁବିଧା ମଧ୍ୟରେ ଅଧକ୍ଷ ପଦ ଗ୍ରହଣ କଲେ ।

ଖୁବ୍ ଶୀଘ୍ର ଶିକ୍ଷାୟତନ ମଧ୍ୟରେ ଏକ ଶିକ୍ଷାନୁକୂଳ ବାତାବରଣ ସୃଷ୍ଟି ହୋଇପାରିଲା । ପ୍ରଫେସର ନାଥଙ୍କର ଅସ୍ତ୍ର ଥିଲା ସ୍ନେହ ଓ ପ୍ରେମ ଉପରେ ଆଧାରିତ ଲୋକ ସଂପର୍କ । ମୁକାବିଲାର ମନୋଭାବ ପରିତ୍ୟାଗ କରି ଛାତ୍ର, ଅଧ୍ୟାପକ, ଅଭିଭାବକ ଓ ଜନସାଧାରଣଙ୍କୁ ସେ ସ୍ନେହ ଓ ମୈତ୍ରୀର ରଜ୍ଜୁରେ ବାନ୍ଧିଲେ । ମହାବିଦ୍ୟାଳୟରେ ଛାତ୍ରମାନେ ନତମସ୍ତକ ହୋଇଗଲେ ତାଙ୍କର ନିଛିଦ୍ର ସ୍ନେହର ଆନ୍ତରିକତା ଓ ଛାତ୍ରବତ୍ସଳ ବ୍ୟକ୍ତିତ୍ୱ ପାଖରେ ଏବଂ ସେହିଠାରେ ହିଁ ମୋର ଜନ୍ମ ।

ଏହାପରେ ମୋର ପାଠପଢ଼ା ଶେଷ ଏବଂ ଚାକିରୀ ଆରମ୍ଭ । ବହୁତ ବର୍ଷ ବିତିଗଲା । ହଠାତ୍ ଦିନେ ଉତ୍କଳ ୟୁନିଭରସିଟିରେ ଦେଖା ହୋଇଥିଲେ । ସ୍କୁଟରରେ ଆସୁଆସୁ ତାଙ୍କ ଘରକୁ ଯିବା ପାଇଁ ମୋତେ କହିଲେ । ଏହି ଯିବା, ଆସିବା ମଧ୍ୟରେ 'ବାପା' ଶବ୍ଦ ପୁତ୍ର ସ୍ନେହ ଠାରୁ ଅଧିକ ମୋତେ ମିଳିଗଲା । ଆମ ହସଖୁସିଆ କଥା ଶୁଣି ମାଆ ଆମର କହନ୍ତି- ଅଧିକାଂଶ ସମୟରେ ତାଙ୍କ ଘରକୁ ଆସିବା ପାଇଁ ମୁଁ କେବେ ଅଖିଆ ତାଙ୍କ ଘରୁ ଆସିନାହିଁ । ନଖାଇଲେ ଗୀତା ଭାଉଜ (ତାଙ୍କ ବହୂ) ଜବରଦସ୍ତୀ ଜାହିର୍ କରନ୍ତି । ଅତିଥି ଅଭ୍ୟାଗତ ସତ୍କାର ତାଙ୍କ ପରିବାରର ସଂସ୍କୃତି । କାହାରି ମନରେ କଷ୍ଟ ଦିଅନ୍ତି ନାହିଁ କିମ୍ବା ଘୃଣା କରନ୍ତି ନାହିଁ । ଦୁଃଖିରଙ୍କିଙ୍କର ସେବା କରିବା ତାଙ୍କ ଜୀବନର ଧର୍ମ । ସବୁ ସଦ୍‌ଗୁଣର ସେ ଖଣି । ଅଭୁଲା ସ୍ମୃତିଟିଏ ସେ । ଅଲିଭା ଜ୍ୟୋତିଟିଏ ସେ । ଯେଉଁମାନେ ତାଙ୍କ ସହିତ ମିଶିଛନ୍ତି, ତାଙ୍କ ସମ୍ପର୍କରେ ଜାଣିଛନ୍ତି, ସେମାନେ କେବେ ବି ତାଙ୍କୁ ପାଶୋରି ଦେଇ ପାରିବେ ନାହିଁ । ତାଙ୍କ ଗାଁ ପାରିହେଲେ ଆମ ଗାଁକୁ ରାସ୍ତା । ତାଙ୍କ ଶ୍ୱଶୁର ଘର ଗାଁରେ ମୋର ହାଇସ୍କୁଲ ପାଠପଢ଼ା । ତାଙ୍କ ସହିତ ମୋର ଅତି ଆତ୍ମୀୟତା । ଜଣେ କୃତୀ ଶିକ୍ଷକଙ୍କ ପରେ ଜଣେ ନିସ୍ୱାର୍ଥପର ମଣିଷ । ସେ ମୋତେ ଭଲ ପାଉଛନ୍ତି । ଉଦାର ଚିତ୍ତରେ ପରାମର୍ଶ ଦେଇଛନ୍ତି । ଝୁଣ୍ଟି ପଡ଼ିଥିଲେ ହାତ ଧରି ଠିଆ ହେବାର ପ୍ରେରଣା ଯୋଗାଇଛନ୍ତି । କେବଳ ବୃତ୍ତିଗତ କ୍ଷେତ୍ରରେ ନୁହେଁ ତା'ର ଚଉହଦି ବାହାରେ ମଧ୍ୟ ସେ ମୋ ପାଖରେ ସାହସ ଓ ପ୍ରେରଣାର ପ୍ରତିମୂର୍ତ୍ତୀ ଭାବରେ ଠିଆ ହୋଇଛନ୍ତି । ତାଙ୍କର ସଂକ୍ଷିପ୍ତ ଜୀବନୀ, "ନିଃସପନ୍ ଶତ୍ରୁଘ୍ନ ନାଥ" ନାମରେ ବହି ଖଣ୍ଡିଏ ଲେଖିଛି ଯାହାକି ବହୁ ଆଦୃତ । ତାଙ୍କ ନାମରେ ଗୋଟିଏ ଫାଉଣ୍ଡେସନ ୨୦୦୦ ମସିହାରେ କରାଯାଇଥିଲା । ପ୍ରତିବର୍ଷ ଜଣେ କୃତୀ ଶିକ୍ଷକଙ୍କୁ 'ପ୍ରଫେସର ଶତ୍ରୁଘ୍ନ ନାଥ ସମ୍ମାନ'ରେ ଭୂଷିତ କରାଯାଉଛି । ଯାହାକିଛି ବାକି ଅଛି ତାହା ମଧ୍ୟ ଏହି ଫାଉଣ୍ଡେସନ୍ ଜରିଆରେ କରାଯିବ ବୋଲି ପ୍ରସ୍ତାବ ରହିଛି ।

ଫାଲ୍‌ଗୁନ ମାସ ୨୬ ଦିନ, ଶୁକ୍ଳପକ୍ଷ ଏକାଦଶୀ, ଶୁକ୍ରବାର ଇଂରାଜୀ ୨୦୦୬ ମସିହା ମାର୍ଚ୍ଚ ୧୦ ତାରିଖ ରାତ୍ରି ୧୧.୨୫ ମିନିଟରେ ସେ ଆମଠାରୁ ବହୁ ଦୂରକୁ ଚାଲିଯାଇଛନ୍ତି । ଯେଉଁଠାରୁ କି ସେ ଆଉ ଫେରି ଆସି ପାରିବେ ନାହିଁ । ଯେଉଁ ନିଷ୍ଠା, ଆଦର୍ଶ, ତ୍ୟାଗ, ସେବା, ସ୍ନେହ, ଆଦର ସାର୍ବଜନୀନ ପ୍ରୀତିର ଉଜ୍ଜ୍ୱଳ ଶିଖାଟିଏ ଜାଳିଦେଇ ଯାଇଛନ୍ତି, ସେହି ଅମ୍ଳାନ ଶିଖା ଜଳୁଥିବ ଯୁଗଯୁଗ ପାଇଁ, ଆଲୋକ ଦେଖାଉଥିବା ଆଗାମୀ ପିଢ଼ିକୁ ।

ମଣିଷ ମରିବ ଦିନେ
    ଜନ୍ମ ହେଲେ ଦେବତା ବି ମରେ,
ଜୀବନ ସାର୍ଥକ
    ଯାହା ଲାଗି ମାଟିଗୁଡ଼ି ଝୁରେ ।

**ସଂପାଦକ, ପ୍ରଫେସର ଶତ୍ରୁଘ୍ନ ନାଥ ଫାଉଣ୍ଡେସନ୍**



# ଶ୍ରଦ୍ଧାଞ୍ଜଳି

**ଶ୍ରୀମତୀ ତିଳୋତ୍ତମା ସେଠୀ**

ଜନ୍ମ ମାତ୍ରେ ହିଁ ମୃତ୍ୟୁ ନିଶ୍ଚିତ । ଏହାକୁ କେହି ଏଡ଼େଇ ଦେଇ ପାରିବେ ନାହିଁ । ତଥାପି ବି ମୃତ୍ୟୁ ସଂପୂର୍ଣ୍ଣ ଭାବରେ ମଣିଷକୁ ମାରିଦେଇ ପାରିବ ନାହିଁ । ମର ଶରୀର ନଷ୍ଟ ହୋଇପାରେ, ହେଲେ ମଣିଷର ସତ୍‌କର୍ମ ସହୃଦୟତା ପାଇଁ ଅନ୍ୟମାନଙ୍କ ହୃଦୟରେ ଓ ମନରେ ପ୍ରେମ ଓ ସ୍ମୃତି ହୋଇ ବଞ୍ଚି ରହେ । ତାହା ହିଁ ଜୀବନର ସାର୍ଥକତା ।

ଗତ ୧୧ ତାରିଖ ସକାଳ ୪.୪୫ ମିନିଟ୍ । ଗୀତା ମାଡ଼ାମ୍‌ଠାରୁ ହଠାତ୍ ଫୋନ୍ ପାଇଲି । ଆଶ୍ଚର୍ଯ୍ୟ ହୋଇଗଲି । ଦୁଇଦିନ ପୂର୍ବରୁ ଭଲ ଥିଲେ । ଅକସ୍ମାତ କଅଣ ହେଲା । ବୋଧହୁଏ ହାର୍ଟ୍‌ଷ୍ଟ୍ରୋକ୍ ହୋଇଥିବ । ଚିରଦିନ ପାଇଁ ଗୋଟିଏ ଦୀପ ଲିଭିଗଲା । ଏ ସ୍ଥାନ ଆଉ ପୂରଣ ହୋଇପାରିବ ନାହିଁ । ଦୁଃଖିରଙ୍କି, ଭିକାରୀମାନଙ୍କ ପ୍ରତି ତାଙ୍କର ଖୁବ୍ ଦରଦ ଥିଲା । ଖାଇ ବସିଥିଲେ ଯଦି ଭିକାରୀଟାଏ ଆସିଯାଏ, ସେ ତାକୁ ଖୁଆଇ ଭିକ୍ଷା ଦେଇ ବିଦା କରନ୍ତି । ଗରିବମାନଙ୍କୁ କ୍ଷମତା ଅନୁସାରେ ସାହାଯ୍ୟ କରନ୍ତି । ପାଖ, ପଡ଼ୋଶୀଙ୍କ ଦୁଃଖ ସୁଖରେ ସେ ସାମିଲ ହୁଅନ୍ତି । ଅତିଥିମାନଙ୍କ ପ୍ରତି ତାଙ୍କ ହୃଦୟରେ ସ୍ୱତନ୍ତ୍ର ଶ୍ରଦ୍ଧା ରହିଥିଲା । ଯିଏ ଯେତେବେଳେ ଘରକୁ ଆସିଲେ ବି କାହାରିକୁ ଆପ୍ୟାୟିତ ନକରି ସେ ଛାଡ଼ନ୍ତି ନାହିଁ । ଆଜିଠାରୁ 'ମା' ଗୀତାରେ' ଡାକ ଆଉ ଶୁଭିବ ନାହିଁ । ପୂର୍ବ ଜନ୍ମରେ ତପସ୍ୟା କରିଥିଲେ ଏଭଳି ଶ୍ୱଶୁରଟିଏ ମିଳିଥାଏ । ଆଦର୍ଶ ଶ୍ୱଶୁରର ସମସ୍ତଗୁଣ ତାଙ୍କଠାରେ ହିଁ ପରିପୂର୍ଣ୍ଣ ଥିଲା ।

ସାରେ ଥରେ ଆମ ଘରକୁ ମିଠାନେଇ ଆସିଥିଲେ । ମୁଁ ବଡ଼ ଆଶ୍ଚର୍ଯ୍ୟ ହେଲି ଏବଂ କହିଲି- ବାପା, ଏତେ କଷ୍ଟ କରି କାହିଁକି ଏହି ମିଠା ଆଣିଲେ । ସେ ଧୀର ଗଳାରେ କହିଲେ, ମା'ରେ ତୁମେ କଅଣ ମୋର କେହି ନୁହଁ ? ତାଙ୍କର ସ୍ନେହବୋଳା କଥାରେ ହିଁ ମୋର ଉତ୍ତର ମିଳିଗଲା । ମୋ ଝିଅ ବାହାଘରରେ ସେ ପ୍ରଥମେ ଶ୍ଳୋକ ପଢ଼ିଥିଲେ । କହିଥିଲେ ଦିନେ ତୋ ଝିଅ ବିଦେଶ ଯିବ । ମୁଁ ମନେମନେ ଭାବୁଥିଲି, ସଂସ୍କୃତ ପାଠ ପଢ଼ିଛି, ବିଦେଶ କଅଣ ଯିବ । ସାରଙ୍କର କଥା ସତ ହେଲା । ଆମ ଝିଅ ଆମ୍‌ୱେରେ ପ୍ଲାଟିନମ୍ ହୋଇ ଦୁଇଦୁଇ ଥର ବିଦେଶ ଗଲାଣି । ସାର୍ ଯାହାକୁ ଯାହା କହୁଥିଲେ ତାହା ବାସ୍ତବରେ ସଫଳ ହେଉଥିଲା ।

ଆଜକୁ ଏଗାର ଦିନ ହେଲା ସେ ଆମଠାରୁ ବହୁ ଦୂରକୁ ଚାଲି ଗଲେଣି । ଏହିଠାରେ ହିଁ ମୁଁ ମୋର ଶ୍ରଦ୍ଧାଞ୍ଜଳୀ ଦେଉଛି ।



ପ୍ରଫେସର ନାଥଙ୍କର ଜୟନ୍ତୀ ପାଳନ ଅବସରରେ ଲେଖିକା ତିଳୋତ୍ତମା ସେଠୀ



# ବୈଷ୍ଣବଜନ

ବିଜୟ ନାୟକ

ତାଙ୍କ ଆବାସ ତ ମହାଶୂନ୍ୟରେ । କେତେଦିନ ସେ ଆଉ ଏ ମାଟିମୋହରେ ରୁନ୍ଧି ହୋଇଥାନ୍ତେ ? ସେ ଅବଶ୍ୟ ମୋହରେ ଆବିଷ୍ଟ ହେଲା ଭଳି ମଣିଷ ନୁହନ୍ତି । ସଂସାରରେ ଥାଇ ନଥିଲା ପରି । ନଳିନୀ ଦଳଗତ ଜଳମିବ । ମାର୍ଚ୍ଚ ମାସ ଦଶ ତାରିଖ ( ୨୦୦୬) ରାତିରେ ସେ ଶୂନ୍ୟ ଗମନ କଲେ । ତହିଁ ପରଦିନ ସକାଳୁ ଏହି ଦୁଃସମ୍ବାଦ ପାଇ ତାଙ୍କ ଶହିଦନଗର ଘରେ ପହଞ୍ଚିଲାବେଳକୁ ସେଠି ଶତ୍ରୁଘ୍ନ-ଶ୍ରଦ୍ଧାଳୁ ମାନଙ୍କର ଭିଡ଼ କାହିଁରେ କେତେ ।

ସାରା ଦେହ ତାଙ୍କର ଘୋଡ଼େଇ ହୋଇଥାଏ ଫୁଲ ଚନ୍ଦନରେ, ମୁହଁକୁ ଛାଡ଼ି । ପାଦରେ ଫୁଲ ଦେଉଦେଉ ନଜର ପଡ଼ିଲା ମୁହଁ ଉପରେ । ଭାରି ସତେଜ ମୁହଁ । କେଉଁଠି ଟିକେ ଯନ୍ତ୍ରଣା, ଅବସାଦ ବା ଅସନ୍ତୋଷର ଚିହ୍ନବର୍ଣ୍ଣ ନାହିଁ । ପ୍ରାପ୍ତି ଅପ୍ରାପ୍ତି, ଲାଭକ୍ଷତିର ସେ ଥିଲେ ବହୁ ଊର୍ଦ୍ଧ୍ୱରେ । ଊର୍ଦ୍ଧ୍ୱରେ ଥିଲେ ମାନଅପମାନ, ଜୟ ପରାଜୟ । ଜୀବନ, ଜୀବନାନ୍ତର ବୋଧେ ତାଙ୍କ ଲାଗି ଥିଲା ଏକାପରି । ଭବଜୟ ବା ଘଟାନ୍ତରର ଯାତନା କିପରି ବା ପ୍ରତିଫଳିତ ହୁଅନ୍ତା ତାଙ୍କ ମୁଖମଣ୍ଡଳରେ ?

କଳା ମୁଗୁନି ପଥରର ମୂର୍ତ୍ତିପରି ଚେହେରା । ତା' ସାଙ୍ଗକୁ ଧୋବଫରଫର ଧୋତି ପଞ୍ଜାବୀ । ଖୁବ ଧୀର କଥାବାର୍ତ୍ତା । ଚାହାଣିରେ ପରକୁ ଆପଣେଇବାର ଭାବ । ସାରା ପୃଥିବୀକୁ କୋଳେଇବାର ପ୍ରବଣତା ଦୁଇବାହୁରେ । କିନ୍ତୁ ତାଙ୍କୁ ସାଧାସିଧା ପୋଷାକରେ ଦେଖିଲେ କେହି କ'ଣ ଭାବି ପାରିବ ଯେ ସେ ହେଉଛନ୍ତି ଏଡ଼େ ଜ୍ଞାନୀ, ନାମକରା ପ୍ରଫେସର ଶତ୍ରୁଘ୍ନ ନାଥ ବୋଲି । କେହି କ'ଣ ଅନୁମାନ କରିପାରିବ ଯେ ସେହି ଲୋକ ଇଂଲଣ୍ଡରୁ ଏମ୍.ଏ. ପାଶ୍ କରିଛନ୍ତି ? ହଠାତ୍ କେହି କ'ଣ ବିଶ୍ୱାସ କରିପାରିବ ଯେ ୧୯୩୪ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସେ ମେଟ୍ରିକ୍ ପାଶ୍ କରିଥିଲେ । ପୁଣି ୧୯୩୯-୪୦ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ଡିପ୍ଲୋମା-ଇନ୍-ଏଜୁକେଶନ୍ ପରୀକ୍ଷାରେ ସମଗ୍ର ବିହାର ଓ ଓଡ଼ିଶାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ ? କେହି କ'ଣ ପରତେ ଯିବ ଯେ ସେ ଏତେ ମୋଟା ମୋଟା ଡିକ୍ସନାରୀ ଓ ବହିସବୁ ଲେଖିଛନ୍ତି ? ଏହି ପରି ଅସାଧାରଣ ପ୍ରତିଭାଧାରୀ ଲୋକ ଜଣକ, ଯେକି ଭାରି ସାଧାରଣ ପ୍ରତିଭାତ ହୁଅନ୍ତି- ସେ ହେଉଛନ୍ତି ଶତ୍ରୁଘ୍ନ ନାଥ ।

ସ୍କୁଲରେ ପଢ଼ିଲା ବେଳୁ ମୁଁ ତାଙ୍କୁ ଦେଖିଛି । ପୁରସ୍କାର ବିତରଣୀ ସଭା ବି ସେମିତି କେଉଁ ଅବସରରେ ତାଙ୍କୁ ଶୁଣିଛି । ଏହି କାଳିଆ ଲୋକଟା ଯାହାଙ୍କୁ ସମସ୍ତେ ଏତେ ମାନୁଛନ୍ତି, ବାହାବା ଦଉଛନ୍ତି, ମୁଣ୍ଡିଆ ମାରୁଛନ୍ତି ତାଙ୍କ ପଦତଳେ - ସେ କିଏ ବୋଲି ସେହି ଆଦ୍ୟ କୈଶୋରରେ ମୋର ଧାରଣା ନଥିଲା ଜମା । ସେ କ'ଣ କହୁଛନ୍ତି, ସେସବୁ କଥା ବି ମୋ ମଗଜରେ ପଶୁ ନଥିଲା । ଭଦ୍ରକ କଲେଜରେ ପଢ଼ିଲାବେଳେ ଜାଣିଲି ଯେ ସେ ସେଠି ଅଧ୍ୟକ୍ଷ ଥିଲେ । ବାସ । ତା'ପରେ ଅଧ୍ୟାପନା କଲାବେଳେ ଓ ପରେ ପ୍ରଶାସନରେ ରହିଲାବେଳେ, ଶତ୍ରୁଘ୍ନ ନାଥଙ୍କ ସହିତ ସଂପର୍କ ବଢ଼ିଲା । ସଭା ସମିତିରେ ଏକାଠି ହେବାର ସୁଯୋଗ ମିଳିଲା । ମୋତେ ଆତ୍ମହରା କଲା ତାଙ୍କ ମହାର୍ଘ ସ୍ପର୍ଶ ।

ପ୍ରଫେସର୍ ନାଥ ଅନେକ ଉପାଦେୟ ବହି ଲେଖିଛନ୍ତି । ସେଥିରୁ କେତୋଟି ମାତ୍ର ମୁଁ ପଢ଼ିଛି । ମୁଁ ପଢ଼ିଥିବା ତାଙ୍କର ଶେଷ ବହିଟି ହେଉଛି 'ଚରାଚର ହିତାୟ' । ଏହା ତାଙ୍କ ଆତ୍ମ-ଜୀବନୀ । ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ୨୦୦୩ ମସିହାରେ ପ୍ରକାଶିତ । ଭଦ୍ରକ ସହର ଉପକଣ୍ଠରେ ଅବସ୍ଥିତ ଉତ୍ତରବାହିନୀ ଗାଁ ଡେଇଁ ସେ କେତେ ରାଇଜ ବୁଲିଛନ୍ତି । କେତେ ଉପରକୁ ଉଠିଛନ୍ତି । ହେଲେ ତାଙ୍କ ଗାଁ ସବୁବେଳେ ତାଙ୍କର ପ୍ରିୟ, ଆତ୍ମୀୟ ହୋଇ ରହିଛି । 'ଗାଁ ନାହିଁ ତ ମା' ନାହିଁ' ବୋଲି ସେ ଲେଖିଛନ୍ତି । ରେଭେନ୍ସା ଭିଏନ୍ ହେବାର ତାଙ୍କର ଗୌରବ, ବିଦେଶ ଯାତ୍ରା, ବିଭିନ୍ନ ଟ୍ରେନିଂ କଲେଜରେ ଶିକ୍ଷାଦାନ, ଆଦ୍ୟ ଭବନରେ ଶିକ୍ଷକତା, ଭଦ୍ରକ ଓ ଏକାମ୍ର କଲେଜରେ ଅଧ୍ୟକ୍ଷତା ଆଦି ବିଷୟରେ ବେଶ୍ ପ୍ରାଞ୍ଜଳ ବର୍ଣ୍ଣନା ରହିଛି ବହିଟିରେ । ଏହିସବୁ ବର୍ଣ୍ଣନା ତାଙ୍କ ଆତ୍ମଜୀବନୀର ଆତ୍ମା କିନ୍ତୁ ନୁହେଁ । ଆତ୍ମକଥାର ନାମକରଣରୁ ମନେହେବ ଯେ ବହିଟି ନିଆରା, ଭିନ୍ନ ଅନ୍ୟଠୁଁ । ଜୀବନ ପ୍ରତି, ସମାଜ ପ୍ରତି ପ୍ରଫେସର ନାଥଙ୍କ ଆଭିମୁଖ୍ୟ ଓ ଦୃଷ୍ଟିଭଙ୍ଗୀ ବେଶ୍ ପ୍ରତିଫଳିତ ହୋଇଛି ତାଙ୍କ ଆତ୍ମକଥା 'ଚରାଚର ହିତାୟ' ବହିରେ ।

ମହିମାଧର୍ମ ଓ ମହାତ୍ମାଗାନ୍ଧୀ- ଏହି ଦୁଇ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଶତ୍ରୁଘ୍ନ ନାଥ । ଗହୀରେଇ ଦେଖିଲେ, ମହିମାଧର୍ମ ଓ ମହାତ୍ମାଗାନ୍ଧୀଙ୍କ ଆଦର୍ଶ ଏକ ଓ ଅଭିନ୍ନ । ସତ୍ୟ, ଅହିଂସା, ପରୋପକାର, ସ୍ୱଚ୍ଛସାଧନ ଆଦି ନୀତିଗୁଡ଼ିକ ବିଷୟରେ ପ୍ରାଚ୍ୟ ଭୂଖଣ୍ଡରେ କାହିଁ କେତେକାଳରୁ କୁହାହୋଇ ଆସୁଛି । ଏସବୁ ହିମାଳୟ ପରି ପ୍ରାଚୀନ । ସ୍ୱୟଂ ଗାନ୍ଧୀ ଏହାକୁ 'ଏଜ୍ ଓଲ୍ଡ ଏଜ୍ ହିମାଲୟଜ୍' ବୋଲି କହିଛନ୍ତି । କିନ୍ତୁ ଗାନ୍ଧୀ ମହାତ୍ମା ଏହି ଆଦର୍ଶଗୁଡ଼ିକୁ ନିଜ ଜୀବନରେ ପ୍ରୟୋଗ କରିଥିଲେ । ଗାନ୍ଧୀଙ୍କର ପ୍ରିୟ ଭଜନ ବିଷୟରେ ପ୍ରାୟ ସମସ୍ତଙ୍କୁ ଜଣାଥିବ । ଗୁଜୁରାଟୀ ସନ୍ଥକବି ନରସିଂହ ମେହେଟାଙ୍କ ଭଜନ ଥିଲା ଗାନ୍ଧୀଙ୍କର ଅତିପ୍ରିୟ-

"ବୈଷ୍ଣବ ଜନ ତୋ ତେନେରେ କହିଯେ
ଯେ ପୀଡ଼ ପରାଇ ଜାନେରେ
ପରଦୁଃଖେ ଉପକାର କରେ ଯେ
ମନ ଅଭିମାନ ନ ଆନେରେ ।"



ପରପିଡ଼ାରେ ଯେ ପୀଡ଼ିତ ସେ ହିଁ ବୈଷ୍ଣବ । ମାନ-ଅଭିମାନର ଉର୍ଦ୍ଧ୍ୱରେ ରହି ପର ଉପକାରରେ ଯେ ବ୍ରତୀ ସେ ହିଁ ବୈଷ୍ଣବ । ପର ଦୁଃଖରେ ଦୁଃଖୀ ହେବାର ଭାବ, ଚରାଚର ହିତରେ ନିଜକୁ ସଅଁପିବାର ଭାବ ହିଁ ବୈଷ୍ଣବ ଭାବ । ମହିମା ଧର୍ମର ଅସଲ କଥା ଆଉ କ'ଣ କି ? ଏଇ ଧର୍ମର ଅନ୍ୟତମ ପରମ ପ୍ରବକ୍ତା ସନ୍ଥକବି ଭୀମ ଭୋଇ ଲେଖିଛନ୍ତି- ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ପରା ବାଧେ । ଏହା ହିଁ ଅନ୍ୟ ପୀଡ଼ାରେ ନିଜ ପୀଡ଼ିତ ହେବାର ଭାବ । ବା 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ'- ଏପରି ଉକ୍ତି ଆଉ କେଉଁ ଭାଷାର ସାହିତ୍ୟରେ ଅଛି କି ନାହିଁ କେଜାଣି । ଗାନ୍ଧୀ ମହାତ୍ମାଙ୍କୁ ତାଙ୍କୁ ଓଡ଼ିଆ ଶିଷ୍ୟମାନେ ଭୀମ ଭୋଇ ଓ ତାଙ୍କ ଭଜନ ବିଷୟରେ ଜଣାଇ ଥିଲେ କି ନାହିଁ, ତାହା ଆମ୍ଭକୁ ଅଜଣା । ଭୀମ ଭୋଇ ଓ ନରସିଂହ ମେହେଟାଙ୍କର ଭଜନର ଭାବ ଏକ । ଗାନ୍ଧୀଙ୍କ ମତରେ ଏହି ଭାବ ଯାହାଠି ଅଛି ସେ ବୈଷ୍ଣବ ।

ପ୍ରଫେସର ଶତ୍ରୁଘ୍ନ ନାଥଙ୍କୁ ଆମେ ବୈଷ୍ଣବ କହିବା । ଗାନ୍ଧୀଙ୍କ ପ୍ରିୟ ଭଜନ ଅର୍ଥରେ ସେ ହି ବୈଷ୍ଣବ ଜନ । ପର ଦୁଃଖରେ ଦୁଃଖୀ । ଅନ୍ୟ ପାଇଁ ହୃଦୟରେ ଭିଜିଲା ଭିଜିଲା ଭାବ । ଚଳଣି ସାଧାସିଧା । ଚେତନା, ଆଚରଣ ଓ ଉଚ୍ଚାରଣରେ ଅଭିନ୍ନତା । ପ୍ରଫେସର ନାଥ ଯାହା ଭାବନ୍ତି ତାହା କହନ୍ତି, ଯାହା କହନ୍ତି ତାହା କରନ୍ତି । ବୈଷ୍ଣବ ଜନ ଆଉ କିଏ ?


**ସମ୍ପାଦକ, କାହାଣୀ**
**ଡି.ଏ. - ୯/୨, ୟୁନିଟ୍-୨, ଭୁବନେଶ୍ୱର**


## ॥ ଅସପତ୍ନ ଶତ୍ରୁଘ୍ନ ନାଥ ॥

**ଡାଃ. ପ୍ରତିଭା ପଂଡ଼ା**

ଜୀବନ ଏକ ଲଂବା ରାସ୍ତା
ମାଟି ଛୁଇଁଲେ ଆରମ୍ଭେ କୁଆଁରେ ।
ନାଟିକା ଠପ୍ ହେଲେ
ଶରୀର, ଜୀବନୀ-ଶକ୍ତି
କୁଆଡ଼େ ଯାଏ କେଉଁ ଅଜଣା ରାଇଜେ
ଖୋଜିଖୋଜି ସଭିଏଁ ପାଗଳ !

ସେଦିନ ଭୋର, ସକାଳ, ଦ୍ୱିପହର, ସନ୍ଧ୍ୟା
ଥିଲା ବ୍ୟତିକ୍ରମ ।
ବରାଭୟ ଆଉ ପୁଣ୍ୟ
ବେଶିବେଶି ଝରିପଡ଼ିଥିଲା ବୋଲି
ମାଟିର ଅଙ୍ଗନେ
ନିଆରା ମଣିଷ
ଆଦର୍ଶ ଶିକ୍ଷକ
ଅସପତ୍ନ ବ୍ୟକ୍ତି ଜଣେ
ଜନ୍ମନେଲେ ଏ ଧରାରେ ।

ଗଢ଼ିଲେ କେତେ ଅନୁଷ୍ଠାନ / ମଣିଷ
ସୃଜିଲେ କେତେ ପୁସ୍ତକ
ପ୍ରାଣ-ସ୍ପନ୍ଦନ ଦେଲେ ମହିମା ଧର୍ମରେ ।

ହଠାତ୍ ଟି.ଭିରେ ତୁମ ମୃତ୍ୟୁର ଖବର
ଶୁଣିଥିଲି ଅନେକ
ପଢ଼ିଥିଲି କିଛିକିଛି ।
ତୁମ ସହ ପ୍ରଥମ ସାକ୍ଷାତ
ହୋମିଓପ୍ୟାଥିକ୍ କଲେଜରେ
'ଶତ୍ରୁଘ୍ନ ନାଥ ଫାଉଣ୍ଡେସନ୍'ରେ
ଜନ୍ମ ଲଗ୍ନରେ ।

ମନେପଡ଼ି ଗଲା-
ତୁମ ନିଷ୍କପଟ ଶବ୍ଦର ଉଚ୍ଚାରଣ
ଭଲ ପାଇବାର ଟାଣପଣ
ସଳଖ କହିବା ଭଙ୍ଗୀର ଔଜଲ୍ୟ
ଆଦର୍ଶ ଓ ନିଷ୍ଠାର ଶିଖା ॥

ମଣିଷ ଗଢ଼ିବାର ନିଶାରେ ମତୁଆଲା
ତୁମକୁ ଝୁରୁଛି ସାଳନ୍ଦୀର ପାଣି
ଖୋଜୁଛି ଦୁଆରୁଦୁଆର ପବନ
ସଭାରେ ଜାହିର ରହିଛି ଉତ୍କଣ୍ଠା...

ତୁମକୁ ପ୍ରଣାମ ।


**ଏନ୍-୬-୩୯୭, ଜୟଦେବ ବିହାର**
**ଭୁବନେଶ୍ୱର - ୧୫**



# ମହାମାନବର ମହାଯାତ୍ରା

**ଡାକ୍ତର ଜଗନ୍ନାଥ ମହାପାତ୍ର**

ତା. ୧୧.୩.୨୦୦୬ ସକାଳ ସାଢ଼େ ଛଅଟାରେ ଖବର ପାଇଲି ଶତ୍ରୁଘ୍ନ ମଉସା ଚାଲିଗଲେ । ପ୍ରଥମେ ତ ବିଶ୍ୱାସ ହେଲାନି । ପର କଥାଟି ମନକୁ ଆସିଲା । 'ରବିଟା ମୋତେ ଟିକେ ଆଗରୁ ଖବର ଦେଲାନି ।' ମନକୁ ବୁଝାଇଲି ମଉସାଙ୍କର ତିନିଜୋଇଁ ଓ ପୁଅ ସମସ୍ତେ ଡାକ୍ତର । ମୁଁ ଆଉ ଅଧିକା କ'ଣ କରିଥାଆନ୍ତି ? ଆମେ ଶେଷ ଦର୍ଶନ ପାଇଁ ଧାଇଁଲୁ । ତାଙ୍କ ପୁଅ ରବି ନାମକରା ଡାକ୍ତର । ନିଜେ ନିଜକୁ ସାନ୍ତ୍ୱନା ଦେବାରେ ସେ ଅଭ୍ୟସ୍ତ । ବିଭିନ୍ନ ଗଣମାଧ୍ୟମ, ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଖବର ଦିଆଗଲା । ଛାତ୍ରଛାତ୍ରୀ, ସହକର୍ମୀ, ବନ୍ଧୁ, ପଡ଼ୋଶୀ, ଶୁଭେଚ୍ଛୁମାନଙ୍କର ଗହଳି ବଢ଼ିଲା । ଶତ୍ରୁଘ୍ନ ନାଥ ଯେ ଗୋଟାଏ ପିଢ଼ିର ଶିକ୍ଷା ବ୍ୟବସ୍ଥାର ଦୃଢ଼ସ୍ତମ୍ଭ ଥିଲେ ଏକଥା ବା ନଜାଣେ କିଏ ? ୧୯୭୪ରେ ଶହୀଦନଗର ଡାକ୍ତରଖାନାରେ ଯୋଗ ଦେବାପରେ ମଉସା ମାଉସୀଙ୍କ ସ୍ନେହ ଆଦର ପାଇଲୁ । ୧୯୭୫ ଅକ୍ଟୋବର ୨୨ତାରିଖରେ ତାଙ୍କ ବଡ଼ପୁଅ ରବି (ହାଉସ୍‌ମ୍ୟାନ୍‌ସିପ୍ କରୁଥାଏ) ଓ ମୁଁ ମୋର ଭେସ୍‌ପା ସ୍କୁଟରରେ ଦୁଇ ନମ୍ବର ଯାଉଥାଉ ରୋଗୀ ଦେଖି । ଗୁରୁଦ୍ୱାର ପାଖରେ ଗୋଟେ ଜିପ୍ ପିଟି ହୋଇ ଆମର ଗୁରୁତର ଦୁର୍ଘଟଣା ହେଲା । ମୁଁ ତ ୧୧ ଘଣ୍ଟା ବେହୋସ୍ ରହିଲି । ରବିର ମୁଣ୍ଡରେ ଆଘାତ ଲାଗିଥାଏ । ମୋର ଚେତା ଫେରିବା ବେଳକୁ ଦେଖିଲି ଶତ୍ରୁଘ୍ନ ମଉସା ଓ ମାଉସୀ ପାଖରେ ଠିଆ ହୋଇଛନ୍ତି । ମାଉସୀ କାନ୍ଦୁଥାଆନ୍ତି । ମଉସା କିନ୍ତୁ ମୋ ମୁଣ୍ଡ ଆଉଁଷି ଦେଲେ । କହିଲେ, "ରବି ଭଲ ଅଛି ବାପା, ତୁମେ ବ୍ୟସ୍ତ ହୁଅନି । ପ୍ରଭୁ ଶୀଘ୍ର ଭଲ କରିଦେବେ ।" ଏକଥା ମୁଁ ଭୁଲିପାରିନି ଆଜିଯାଏ । ଅନ୍ୟ କିଏ ହୋଇଥିଲେ ମୋ ପୁଅର ଦୁର୍ଘଟଣା ପାଇଁ ତୁମେ ଦାୟୀ କହି ମୋତେ ବିରକ୍ତ ହୋଇ ଥାଆନ୍ତେ ତ ? ଘରକୁ ଗଲେ କିଛି ନଖୁଆଇ ଛାଡ଼ନ୍ତିନି । ପିଲାମାନଙ୍କ କଥା ପଚାରନ୍ତି । ମୋ ସ୍ତ୍ରୀ ଆଉ ଝିଅଙ୍କୁ ସେ ବହୁତ ଶ୍ରଦ୍ଧା କରନ୍ତି । ଯେଉଁଠି ପାଠ ସେଠି ସିଏ ପହଞ୍ଚି ଯାଆନ୍ତି ଆଉ ମନୋବଳ ବଢ଼ାଇ ଦିଅନ୍ତି ଥକି ଯାଉଥିବା ମଣିଷଟିର ।

ମହାନଗରର ସାଂସ୍କୃତିକ ଓ ସାମାଜିକ ଅନୁଷ୍ଠାନ ସହିତ ସେ ଜଡ଼ିତ । ତାଙ୍କ ଉପସ୍ଥିତି ହିଁ ପରିବେଶଟିକୁ ପବିତ୍ର କରିଦିଏ । ସକାଳୁ ଉଠିଲେ ଆମେ ଦେଖୁ ଗେରୁଆ ପିନ୍ଧି ରାସ୍ତାରେ ଚାଲୁଥିବା ମଣିଷଟିଏ, ଯିଏ ବାଟରେ ଯାହାକୁ ଦେଖିଲେ "ବାପା, ଭଲ ଅଛୁ ?" ପଚାରି ଦିଅନ୍ତି । ମୁଁ କେବେ ତାଙ୍କର ଛାତ୍ର ନଥିଲି, ମାତ୍ର ସେ ସମସ୍ତଙ୍କୁ ଛାତ୍ର ଭଳି ହିଁ ଶ୍ରଦ୍ଧା କରୁଥିଲେ । ଦିବଂଗତ ନାଟ୍ୟକାର ପ୍ରାଣବନ୍ଧୁ କର ଥିଲେ ତାଙ୍କର 'ପ୍ରାଣ ଭାଇନା' । ପ୍ରାଣବନ୍ଧୁ କରଙ୍କ ଶରୀର ଅସୁସ୍ଥ ଥିବା ସମୟରେ ମଉସା ସବୁଦିନ ଯାଇ ତାଙ୍କ ବାରଣ୍ଡାରେ ଗୋଟେ ଚଉକିରେ ନିରବରେ ବସନ୍ତି । ପୁଣି ଉଠି ଘରକୁ ଆସନ୍ତି । କେତେଥର ପଚାରିଛି, 'ମଉସା, ଗାଡ଼ିରେ ବସନ୍ତୁ ମୁଁ ଛାଡ଼ିଦେବି ଘରେ ।' 'ନାଇଁ, ମୁଁ ଚାଲିଯିବି, ଏଇଠି ତ ଅଳ୍ପବାଟ ।' ସେ ନିରବତା ଭିତରେ କେତେ ଦୁଃଖ ଜମାଟ ବାନ୍ଧିଥାଏ ମୁଁ ବା ତାର ଟେର ପାଆନ୍ତି କେଉଁଠୁ ।

ମଉସା ଏବେ ପରପାରିରେ । ଅନେକ ବନ୍ଧୁ ଜୁଟି ଯିବେଣି ତାଙ୍କୁ । ହେଲେ ଆମେ ତାଙ୍କୁ ହରାଇ ନିଃସ୍ୱ ହୋଇଗଲୁ । ଦୁଃଖ ବିପଦରେ ମଥାରେ ହାତ ବୁଲାଇ ଦେବାକୁ କେହି ଜଣେ ଥିଲେ ବୋଲି ଯେଉଁ ଦମ୍ଭ ଥିଲା, ତାହା ସରିଗଲା । ମଉସା, ଆପଣ ଯେଉଁଠି ଥିବେ ନିଶ୍ଚୟ ଆନନ୍ଦରେ ଥିବେ । ଆମକୁ ଭୁଲିଯିବେନି । ଆମେ ଆପଣଙ୍କ ନିର୍ଦ୍ଦେଶ ଓ ଉପଦେଶ ପାଇଁ ଅପେକ୍ଷା ରଖିଛୁ ।

ଶହୀଦନଗର, ଭୁବନେଶ୍ୱର

# ସ୍ୱର୍ଗୀୟ ପ୍ରଫେସର ଶତ୍ରୁଘ୍ନ ନାଥ- ଏକ ଅଶ୍ରୁପ୍ଳୁତ ଶ୍ରଦ୍ଧାଞ୍ଜଳି

**ପ୍ରଫେସର ନାରାୟଣ ବେହେରା**

ଛିନ୍ନମସ୍ତା ଉତ୍କଳ ଜନନୀର କୋଳମଣ୍ଡନ କରି ଯେଉଁ କେତେଜଣ ପ୍ରଥିତ ଯଶା ଜନ୍ମ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ପ୍ରଫେସର ଶତ୍ରୁଘ୍ନ ନାଥ ଥିଲେ ଜଣେ ଅନନ୍ୟ ବ୍ୟକ୍ତିତ୍ୱର ଅଧିକାରୀ । ସେ ଥିଲେ ଏକାଧାରାରେ ଜଣେ ବିଶିଷ୍ଟ ଶିକ୍ଷାବିତ୍, ସୁଦକ୍ଷ ପ୍ରସାଶକ, ଜଣେ ଖ୍ୟାତନାମା ଲେଖକ, ଜଣେ ମାନବବାଦୀ, ଛାତ୍ରବତ୍ସଳ ଏବଂ ସର୍ବୋପରି ଜଣେ ସ୍ଥିତ ପ୍ରଜ୍ଞ ବ୍ୟକ୍ତି । ଯଥାର୍ଥରେ ସେଥିଲେ ଉତ୍କଳ ରତ୍ନ । ତାଙ୍କୁ ଜନ୍ମ ଦେଇ ଭଦ୍ରକର ମାଟି ଓ ପାଣି ପବନ ଆଜି ଧନ୍ୟ ହୋଇଛି । ଶ୍ରୀଯୁକ୍ତ ଶତ୍ରୁଘ୍ନ ନାଥ ଭଦ୍ରକ ନିକଟସ୍ଥ ଉତ୍ତରବାହିନୀ ନାମକ ଏକ ପଲ୍ଲୀ ଗ୍ରାମରେ ଏବଂ ଏକ ଗରୀବ ପରିବାରରେ ଜନ୍ମ ଲାଭ କରିଥିଲେ । ତାଙ୍କର ପିତା ସ୍ୱର୍ଗୀୟ ଭିକାରୀ ଚରଣ ନାଥ ଜଣେ ସାଧାରଣ ଆୟୁର୍ବେଦିକ ଚିକିତ୍ସକ (ବୈଦ୍ୟ) ଏବଂ ମାତା ସ୍ୱର୍ଗୀୟା ଗଣ୍ଡେଇ ନାଥ ଜଣେ ସାଧାରଣ ଅଶିକ୍ଷିତା ମହିଳା ଥିଲେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଏହି ଯେ ଅତି ପିଲାଟି ଦିନୁ ଶ୍ରୀଯୁକ୍ତ ନାଥ ବାପା, ମାଙ୍କୁ ହରାଇ ଦୁଃଖ ଏବଂ ଦୈନ୍ୟ ମଧ୍ୟ ଦେଇ କାଳାତିପାତ କରୁଥିଲେ । ପିତୃମାତୃହରା ବାଳକ ଶତ୍ରୁଘ୍ନ ନାଥ ଦାରିଦ୍ର୍ୟର କଷାଘାତ ମଧ୍ୟଦେଇ ଗତି କରୁଥିଲେ ମଧ୍ୟ ତାଙ୍କର



ଉଜ୍ଜ୍ୱଳ ଭବିଷ୍ୟତର ଆଭାଷ ମିଳିଥିଲା । ସେଥିପାଇଁ ବୋଧହୁଏ ସେ ନିଜର ଆତ୍ମବିଶ୍ୱାସ ହରାଇ ନଥିଲେ କି ଜୀବନର ଲକ୍ଷ୍ୟଠାରୁ ବିଚ୍ୟୁତ ହୋଇ ନଥିଲେ । ଯଦିଓ ଛେଉଣ୍ଡ ବାଳକ ଶତ୍ରୁଘ୍ନଙ୍କର ଜୀବନ ଶୈଳୀ ଉପରେ ବାପା, ମା'ଙ୍କର ପ୍ରଭାବ ପଡ଼ି ନଥିଲା, ତଥାପି ମଧ ସେ ଥିଲେ ଦୃଢ଼ ପ୍ରତିଜ୍ଞ, କର୍ତ୍ତବ୍ୟ ନିଷ୍ଠ ଏବଂ ପ୍ରଚଣ୍ଡ ଆତ୍ମବିଶ୍ୱାସୀ । ତାଙ୍କ ଜୀବନ ଇତିହାସକୁ ଯଦି ଆମେ ଆଲୋଚନା ଏବଂ ପର୍ଯ୍ୟାଲୋଚନା କରିବାତେବେ ଆମେ ଜାଣିବାକୁ ପାଇବା ଯେ ତାଙ୍କର ଜୀବନର ବିଶେଷତ୍ୱ ହେଲା 'ବିଭୂକୃପା କେବଳଂ' । ଏହାକୁ ଆଧାର କରି ସେ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ଏବଂ ସଫଳତାର ପାହାଚ ଗୋଟିଏ ପରେ ଗୋଟିଏ ଚଢ଼ି ଶେଷରେ ସେ ଶିଖରରେ ଯାଇ ପହଞ୍ଚି ପାରିଥିଲେ । ଦାରିଦ୍ର୍ୟ ମଧଦେଇ ଗତିକରୁଥିଲେ ମଧ ସେ ପୁରାଣ ଶାସ୍ତ୍ର ଅଧୟନ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଫଳରେ ରାମାୟଣ ଏବଂ ଭାଗବତ ଗୀତା ଅଧୟନ କରି ସେ ବହୁଳ ଭାବେ ପ୍ରଭାବିତ ହୋଇଥିଲେ । ସେଥିପାଇଁ ବୋଧହୁଏ ସେ ଉତ୍ସର୍ଗୀକୃତ ଜୀବନ ଯାପନ କରିବା ପାଇଁ ପ୍ରେରଣା ପାଇଥିଲେ । ଯଥାର୍ଥରେ ସେ ଥିଲେ ଜଣେ କର୍ମଯୋଗୀ, ଏବଂ ଅଜାତ ଶତ୍ରୁ । ଅନ୍ୟଭାଷାରେ କହିବାକୁ ଗଲେ କର୍ମ ହିଁ ତାଙ୍କ ଜୀବନର ଥିଲା ମାନଦଣ୍ଡ । ସେ ଭଲ ଭାବରେ ହୃଦୟଙ୍ଗମ କରି ପାରିଥିଲେ ଯେ କର୍ମ ହିଁ ତାଙ୍କ ପାଇଁ ଥିଲା ଶ୍ରେଷ୍ଠ ଉପାସନା । (Work is worship and duty is God) । ସୁତରାଂ ସେ ଦୈନ୍ୟ ଏବଂ ଦାରିଦ୍ର୍ୟ ମଧ ଦେଇ ଗତି କରୁଥିଲେ ମଧ ଗ୍ରାମ୍ୟ ଚାଟଶାଳୀରୁ ପ୍ରାଥମିକ ଶିକ୍ଷା ଶେଷ କରି ଭଦ୍ରକ ହାଇସ୍କୁଲରେ ପ୍ରବେଶ କଲେ । ତାଙ୍କ ଜୀବନରେ ପ୍ରକୃତ ସଂଗ୍ରାମ ଆରମ୍ଭ ହେଲା ଏହି ଭଦ୍ରକ ହାଇସ୍କୁଲରୁ । ଭଦ୍ରକ ହାଇସ୍କୁଲର ତତ୍‌କାଳୀନ ଶିକ୍ଷକମାନେ ବାଳକ ଶତ୍ରୁଘ୍ନର ଦୃଢ଼ ପ୍ରତିଜ୍ଞା କର୍ତ୍ତବ୍ୟ ନିଷ୍ଠାର ସୂଚନା ପାଇ ତାଙ୍କୁ ପ୍ରୋତ୍ସାହନ ପ୍ରଦାନ ସହିତ ତାଙ୍କୁ ଆର୍ଥିକ ସାହାଯ୍ୟ ମଧ ଦେଇଥିଲେ । ଫଳରେ ସେ ୧୯୩୪ ମସିହାରେ ଭଦ୍ରକ ହାଇସ୍କୁଲରୁ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ କୃତିତ୍ୱର ସହିତ ପାଶ୍ କରିଥିଲେ । ତତ୍‌ପରେ ସେ କଟକ ଯାଇ ରେଭେନ୍ସା କଲେଜରେ ଉଚ୍ଚଶିକ୍ଷା ପାଇଁ ନାମ ଲେଖାଇଥିଲେ । ସେଠାରେ ମଧ ତାଙ୍କୁ ଜୀବନ ସହିତ ସଂଗ୍ରାମ କରିବାକୁ ପଡ଼ିଥିଲା । ଏବଂ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ଭଦ୍ରକ ଅଞ୍ଚଳ ପାଇଁ ଗୌରବ ଆଣିଥିଲେ । ତାପରେ ଆଉ ସେ ପଛକୁ ଫେରି ନାହାନ୍ତି । ତାପରେ ୧୯୪୦ ମସିହାରେ ପାଟନା ବିଶ୍ୱବିଦ୍ୟାଳୟର ଶିକ୍ଷା ବିଷୟରେ ଡିପ୍ଲୋମା ପାଶ୍ କରି, ସେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ୧୯୪୦ ମସିହାଠାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ଲଣ୍ଡନରେ ଅବସ୍ଥାନ କରି ଅଧାପନା କରୁଥିଲେ । ସେତେବେଳେ ଜଣେ ଓଡ଼ିଆ ଇଂଲଣ୍ଡ ଯାଇଁ ସେଠାରେ ୮ ବର୍ଷ କାଳ ଶିକ୍ଷାଦାନ କରି ଗୌରବଅର୍ଜନ କରିବା ନିଶ୍ଚିତ ଭାବେ ଏକ ଦୁରୂହ ବ୍ୟାପାର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତାଙ୍କ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଲା, ସେ ଏଥି ପାଇଁ କେବେ ନିଜକୁ ଗର୍ବ ଅନୁଭବ କରି ନାହାନ୍ତି କିମ୍ବା କଥା ପ୍ରସଙ୍ଗରେ ମଧ କାହାକୁ କେବେ କହି ନଥିବା ତାଙ୍କର ନିକଟମ (ବନ୍ଧୁମାନଙ୍କ) ଠାରୁ ମୁଁ ଶୁଣିବାକୁ ପାଇଛି । ତାଙ୍କର ଲଣ୍ଡନ ରହଣିକାଳ ମଧରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଶିକ୍ଷାବିଷୟରେ ସ୍ନାତକୋତ୍ତର ଡିଗ୍ରୀ ମଧ ହାସଲ କରିଥିଲେ । ଲଣ୍ଡନରୁ ଫେରି ସେ ଭଦ୍ରକ ହାଇସ୍କୁଲରୁ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । ତାପରେ ସେ ଓଡ଼ିଶାର ବିଭିନ୍ନ ସ୍କୁଲ କଲେଜରେ ବିଭିନ୍ନ ପଦପଦବୀରେ ରହି ଏବଂ ଶିକ୍ଷାଦାନ କରି ତାଙ୍କର ଅସଂଖ୍ୟ ଛାତ୍ରଛାତ୍ରୀଙ୍କର ହୃଦୟ ମଧ ଜୟ କରିପାରିଥିଲେ । ତାଙ୍କର ଚାକିରୀକାଳ ମଧରେ ଓଡ଼ିଶାର ପ୍ରମୁଖ ମହାବିଦ୍ୟାଳୟ, ଭଦ୍ରକ କଲେଜ ଏବଂ ରାଧାନାଥ ଟ୍ରେନିଂ କଲେଜର ପ୍ରିନ୍‌ସିପାଲ୍ ରୂପେ ଅବସ୍ଥାପିତ ହୋଇ ତାଙ୍କର ପ୍ରଶାସନିକ ଦକ୍ଷତା ପ୍ରତିପାଦନ କରିବାକୁ ସକ୍ଷମ ହୋଇପାରିଥିଲେ । ଏତଦ୍ ବ୍ୟତୀତ ନଳିନୀଦେବୀ ମହିଳା ଟ୍ରେନିଂ କଲେଜ, ବୋଲଗଡ଼ ଟ୍ରେନିଂ କଲେଜ ଏବଂ ଏକାମ୍ର କଲେଜର ପ୍ରତିଷ୍ଠା ଏବଂ ପରିଚାଳନା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରି ସେ ଆଜି ସମସ୍ତଙ୍କ ଠାରେ ନମସ୍ୟ ହୋଇ ରହିଯାଇଛନ୍ତି । ସେ ଓଡ଼ିଶାର ମୌଳିକ ଶିକ୍ଷାର ପ୍ରବର୍ତ୍ତକ ଥିଲେ କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ । ଏତଦ୍ ବ୍ୟତୀତ ଓଡ଼ିଶାର ଶିକ୍ଷାର ଗୁଣାତ୍ମକ ମାନ ବିକାଶ ପାଇଁ ଯୋଜନା ପ୍ରସ୍ତୁତ କରି ଆଜି ସେ ସମସ୍ତଙ୍କ ପାଖରେ ସ୍ମରଣୀୟ ହୋଇ ରହିଗଲେ । ସେଥିପାଇଁ ବୋଧହୁଏ ତାଙ୍କୁ ଉତ୍କଳ ରତ୍ନ ଉପାଧିରେ ଭୂଷିତ କରାଯାଇଥିଲା । ସୁତରାଂ ଏଥିରୁ ପ୍ରତୀୟମାନ ହୁଏ ଯେ ସେ ଶିକ୍ଷାକୁ ନିଜର ପେଶା ଏବଂ ନିଶା ରୂପେ ଗ୍ରହଣ କରି ନିଜ ଜୀବନର ଉତ୍କର୍ଷତାକୁ ପ୍ରତିପାଦନ କରିପାରିଛନ୍ତି । ବିଲାତ ଫେରନ୍ତା ସାହେବ ରହିଁଥିଲେ ଅତି ସହଜରେ ପ୍ରଶାସନିକ କ୍ଷେତ୍ରରେ ପ୍ରବେଶ କରି ପାରିଥାଆନ୍ତେ । କିନ୍ତୁ ତାଙ୍କୁ କ୍ଷମତା ଏବଂ ପଇସା ଆକୃଷ୍ଟ କରିପାରିନଥିଲା । ସେଥିପାଇଁ ବୋଧହୁଏ ଶିକ୍ଷକତାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଏହା ଥିଲା ତାଙ୍କ ଜୀବନର ବିଶେଷତ୍ୱ ।

ସେ ମହିମାଧର୍ମ ପ୍ରତି ଆକୃଷ୍ଟ ହୋଇ ତାକୁ ମଧ ଗ୍ରହଣ କରିଥିଲେ । କାରଣ ମହିମାଧର୍ମ ମାନବବାଦ ଉପରେ ଆଧାରିତ ଏବଂ ଏହା ଜାତିପ୍ରଥାକୁ ସ୍ୱୀକାର କରେନାହିଁ । କାରଣ ମାନବବାଦର ସେ ଥିଲେ ଜଣେ ପୃଷ୍ଠପୋଷକ । ସେଥିପାଇଁ ମହିମାଧର୍ମ ଉପରେ ସେ ଓଡ଼ିଆ ଏବଂ ଇଂରାଜୀ ଭାଷାରେ ବହୁ ପୁସ୍ତକ ରଚନା କରିଛନ୍ତି । ଜଣେ ସଫଳ ବ୍ୟକ୍ତିରୂପେ ନିଜକୁ ପ୍ରତିପାଦନ କରିପାରିଛନ୍ତି । ଏହା ବ୍ୟତୀତ ସେ ବିଭିନ୍ନ ଶିକ୍ଷାନୁଷ୍ଠାନ ଏବଂ ଧର୍ମାନୁଷ୍ଠାନ ସହିତ ନିଜକୁ ଓତଃପ୍ରୋତ ଭାବରେ ଜଡ଼ିତ କରି ସେ ନିଜ ଜୀବନକୁ ଧନ୍ୟ କରି ପାରିଥିଲେ ।

ପୁନଶ୍ଚ ସେ ଗାନ୍ଧିଦର୍ଶନ ଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଥିଲେ । ସୁତରାଂ ତାଙ୍କର ଚାଲିଚଳନ, କଥାଭାଷା ଏବଂ ପରିପାଟୀକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସେ ମହାତ୍ମାଗାନ୍ଧୀଙ୍କ ପଦାଙ୍କ ଅନୁସରଣ କରୁଥିଲେ ।



ଥରେ ଯିଏ ତାଙ୍କ ସହିତ କଥାବାର୍ତ୍ତା କରିଛି, ସେ ତାଙ୍କୁ କେବେ ମଧ୍ୟ ଭୁଲି ପାରିନାହିଁ । ତାଙ୍କ ଜୀବନର ବୈଶିଷ୍ଟ୍ୟ ହେଲା ଯେ ସେ ସମସ୍ତଙ୍କୁ ଦୁଇହାତ ଯୋଡ଼ି, ହସହସ ମୁହଁରେ ଅଭିବାଦନ ଜଣାନ୍ତି । ସୁତରାଂ ଅଗାଧ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ ମଧ୍ୟ ନମ୍ରତା ତାଙ୍କ ଜୀବନର ଆଉ ଏକ ବିଶେଷତ୍ୱ । ଅବଶ୍ୟ ମୁଁ ଅନେକ ଥର ତାଙ୍କର ସାନ୍ନିଧ୍ୟ ଲାଭ କରିଛି, କିନ୍ତୁ ତାଙ୍କ ସହିତ ଭୁବନେଶ୍ୱରରୁ ଭଦ୍ରକ ଯାତ୍ରା କରିବାର ଅଭୁଲା ସ୍ମୃତି ସବୁଦିନ ପାଇଁ ଅଭୁଲା ହୋଇ ମୋ ମନ ମଧ୍ୟରେ ରହିଯିବ । ପାଣିକୋଇଲି ଠାରେ ଜଳଖିଆ ଖାଇବା ପାଇଁ ଆମେ ଗୋଟିଏ ହୋଟେଲ୍‌କୁ ଗଲୁ । ଜଳଖିଆ ଖାଇସାରିବା ପରେ ପଇସା ଦେବା ପାଇଁ ଆମ ଭିତରେ ଏକ ପ୍ରତିଯୋଗିତା ଆରମ୍ଭ ହୋଇଗଲା । କିନ୍ତୁ ତାଙ୍କର ସ୍ୱଭାବସୁଲଭ ଗୁଣରେ ସେ ସୁନ୍ଦର ଭାବରେ ସମସ୍ୟାର ସମାଧାନ କରିପକାଇଲେ । ସେ ହସହସ ମୁହଁରେ କହିଲେ 'ଯେତେବେଳେ ବୟସ୍କ ଲୋକ ସାଙ୍ଗରେ ଥାଆନ୍ତି, ତାଙ୍କର ହିଁ ପଇସା ଦେବାର ଅଧିକାର ଅଛି ।' ସେଥିରେ ଆମେ ସମସ୍ତେ ଚୁପ୍ ହୋଇଗଲୁ । ଏହା ଥିଲା ତାଙ୍କ ଜୀବନର ବିଶେଷତ୍ୱ । ସେଥିରେ ଗର୍ବ କିମ୍ବା ଅହଂକାର ବହୁ ଦୂରରେ । ତାଙ୍କର ଅଧ୍ୟବସାୟ, ଆତ୍ମବିଶ୍ୱାସ, ସର୍ବୋପରି କର୍ମ ସଂସ୍କୃତି ବଳରେ ସେ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଅଭୁତପୂର୍ବ ପାରଦର୍ଶିତା ଲାଭ କରିପାରିଥିଲେ । ତାଙ୍କ ପ୍ରଣୀତ ୪୦ରୁ ଊର୍ଦ୍ଧ୍ୱ ପୁସ୍ତକ ମଧ୍ୟରୁ 'ଆମ ଯୁଗ କଥା', 'ମୌଳିକ ଶିକ୍ଷାନୀତି', 'ବିଶ୍ୱବନ୍ଧୁ', 'ପିଲାଙ୍କ ବିଲାତ କଥା', 'ଭକ୍ତକବି ଭୀମଭୋଇ' ଏବଂ 'ଶିକ୍ଷାର ଧାରା' ପ୍ରଭୃତି ପୁସ୍ତକ ତାଙ୍କର ପାଣ୍ଡିତ୍ୟର ସଂକେତ ବହନ କରେ ।

ସୁତରାଂ ମୋଟାମୋଟି କହିବାକୁ ଗଲେ ସେ ଜଣେ ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ଜଣେ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରିଥିଲେ । ପୁନଶ୍ଚ ତାଙ୍କ ବ୍ୟକ୍ତିତ୍ୱ କୌଣସି ନିର୍ଦ୍ଦିଷ୍ଟ ପରିସର ଭିତରେ ଆବଦ୍ଧ ନହୋଇ ତାହା ଥିଲା ସର୍ବବ୍ୟାପୀ ଏବଂ ସୁଦୂରପ୍ରସାରୀ । ଅନ୍ୟ ଭାଷାରେ କହିବାକୁ ଗଲେ ସେ ଶିକ୍ଷା ବିଭାଗରେ ପ୍ରତିଷ୍ଠା ଲାଭ କରିଥିଲେ ମଧ୍ୟ ତାଙ୍କର ବ୍ୟକ୍ତିତ୍ୱ ଥିଲା ପରିବ୍ୟାପ୍ତ । ଏହା ହିଁ ଥିଲା ତାଙ୍କ ଜୀବନର ବୈଶିଷ୍ଟ୍ୟ । କିନ୍ତୁ ବିଧିରବିଧାନ କେ କରିପାରେ ଆନ । ବିଧିର ବିଧାନ ହେଲା- ସତ୍ୟର ଉନ୍ମେଷ ଏବଂ ପ୍ରତିପାଦନ କରିବା । ସୁତରାଂ ସବୁ ଯୁଗରେ ଏବଂ ସବୁକାଳରେ ମୃତ୍ୟୁ ହିଁ ସତ୍ୟ, ଅନ୍ୟ ସବୁ ମିଥ୍ୟା । ଜନ୍ମ ହେଲେ ମୃତ୍ୟୁ ଅନିର୍ବାଯ୍ୟ । 'ମର୍ତ୍ତ୍ୟମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ' । ଯେତେ ଶ୍ରୁତିକଟୁ ହେଲେ ମଧ୍ୟ ଏହି ସତ୍ୟକୁ ସମସ୍ତେ ସ୍ୱୀକାର କରିବାକୁ ବାଧ୍ୟ । ଖାଲି ସେତିକି ନୁହେଁ, ଏହି ଅନିତ୍ୟ ସଂସାରରେ ଆଖିକୁ ଯାହା ଦେଖାଯାଉଛି, ସବୁଯେ ଦିନେ ବିନଷ୍ଟ ହେବ ଏଥିରେ ସନ୍ଦେହ ନାହିଁ । ଯଃ ଦୃଷ୍ଟମ୍ ସଃ ନଷ୍ଟମ୍ । ସୁତରାଂ ଆଦିମାନବ ଧନ-ଜନ, ଗୋପ-ଲକ୍ଷ୍ମୀକୁ ଲାଭ କରି ଯେଉଁ ଗର୍ବ ଅନୁଭବ କରୁଛି ତାହା ଦିନେ କାଳ ଗର୍ଭରେ ଲୀନ ହେବ । ଏହା ହିଁ ସତ୍ୟ । ସେଥିପାଇଁ ବୋଧହୁଏ କବି ଲେଖିଛନ୍ତି- 'କେହି ରହିନାହିଁ ରହିବେ ନାହିଁଟି ଭବ ରଙ୍ଗମଞ୍ଚ ତଳେ, ସର୍ବେ ନିଜନିଜ ଅଭିନୟ ସାରି ବାହୁଡିବେ କାଳବଳେ ।' ସୁତରାଂ ଆଜି ପ୍ରଫେସର ଶତ୍ରୁଘ୍ନ ନାଥଙ୍କୁ ମଧ୍ୟ ସେଇ ଧର୍ମ ପାଳନ କରି ପରମପିତା ପରମାତ୍ମାଙ୍କ ସାନ୍ନିଧ୍ୟ ଲାଭ କରି ଇହଧାମ ତ୍ୟାଗ କରିବାକୁ ପଡ଼ିଲା । ଏହାହିଁ ଆମ ସମସ୍ତଙ୍କ ପାଇଁ ସତ୍ୟ । କିନ୍ତୁ ପ୍ରକୃତପକ୍ଷେ ମନୁଷ୍ୟ ଅବିନଶ୍ୱର । ତାର ମୃତ୍ୟୁ ନାହିଁ କି ବିଲୟ ନାହିଁ । ସୁତରାଂ ମୃତ୍ୟୁର ଅର୍ଥ ହେଲା କେବଳ ସ୍ଥୂଳ ଶରୀର ପରିତ୍ୟାଗ ଏବଂ ତାର ବିଲୟ । କିନ୍ତୁ ମନୁଷ୍ୟର ସୂକ୍ଷ୍ମ ଶରୀର ଆତ୍ମା ରୂପରେ ପରମାତ୍ମାଙ୍କର ପାଦପଦ୍ମରେ ବିଶ୍ରାମ ନିଏ । ସେଥିପାଇଁ ଯଥାର୍ଥରେ କବି ଲେଖିଛନ୍ତି- 'ତୁମ ମରଦେହ ଗ୍ରାସିଛି ଶ୍ମଶାନ, ମାତ୍ର ଯଶଦେହେ ତୁମେ ଆୟୁଷ୍ମାନ୍ ।'

ଭୂତପୂର୍ବ ଅଧ୍ୟକ୍ଷ, ଭଦ୍ରକ ମହାବିଦ୍ୟାଳୟ

# ଅଥଳ ଅମ୍ବୁଧି

**ନରସିଂହ ସାହୁ**

ଦେଖିବାକୁ ନିପଟ ମଫସଲିଆ, ହୁଣ୍ଡା ହାଉଡ଼ା ଭଳି ରୂପ । କଥା କହିଲାବେଳେ ଯେମିତି ମାଠିମୁଠି, ନିଠେଇ ଜାଠେଇ କହେନା, ଆମ ମନେହୁଏ ଆଗରେ ପଣ୍ଡିତ ମଣ୍ଡଳି ଦେଖିଦେଲେ ବୁଢ଼ା ସେଠି ଥପକିନା ବସିପଡ଼ିବ ।

କିନ୍ତୁ ବାପ୍‌ରେ ବାପ୍ । ଏଇ ଲୋକଟା ପୁଣି ଏତେ ପାଠୁଆ, ଜ୍ଞାନର ସମୁଦ୍ର- ଶିକ୍ଷା ଶାସ୍ତ୍ରରେ ଏମ୍.ଏ (ଲଣ୍ଡନ), ପ୍ରଫେସର, ପ୍ରିନ୍‌ସପାଲ । କିନ୍ତୁ ପାଠ କ'ଣ ବଡ଼ ? ହୁଏତ ପାଠ ସମୁଦ୍ରରେ ବୁଡ଼ିହେବ, ତଳ ଛୁଇଁ ହେବ । କିନ୍ତୁ ସ୍ନେହ, ପ୍ରେମ ଆନ୍ତରିକତା, ଆତ୍ମୀୟତାର ଯୋଉ ଅଥଳ ଅମ୍ବୁଧି, ସିନ୍ଧୁ, ସିନ୍ଧୁର ଗର୍ଜନ- କିଏ ଠିଆହୋଇ ପାରିବ ତାଙ୍କ ପାଖରେ ? ତଥାପି ଭୁରୁଡ଼ି ମାରିବେ । କହିବେ- ନାଇଁ ନାଇଁ, ସେ ମାମୁଲି ଲୋକଟା । କିଛି ଜାଣେ ନାଇଁ । ଏପରି ଏକ ମାମୁଲି ଲୋକ ଥିଲେ ଶତ୍ରୁଘ୍ନ ନାଥ । ତାଙ୍କୁ ଆଉ ଦେଖିବାକୁ ମିଳିବ ନାହିଁ । ମାତ୍ର କାଳର ବେଳା ଭୂମିରେ ଯେଉଁ ପଦଚିହ୍ନ ରଖିଦେଇ ଗଲେ ତାହା ଆମର ଅମୂଲ୍ୟ ସମ୍ବଳ । ତାଙ୍କର ମୃତ୍ୟୁଞ୍ଜୟୀ ଆତ୍ମା ଶାନ୍ତି ପାଉ, ଭକ୍ତିପୂତ ପ୍ରାର୍ଥନା ।

ଅଧ୍ୟାପକ (ଅବସରପ୍ରାପ୍ତ)



# ସାରଙ୍କ ସହିତ ଶେଷ ସାକ୍ଷାତ

କାଳିକୁମାର

ସବୁଥର ପରି ସେଦିନ ମଧ ପ୍ରାତଃ ଭ୍ରମଣରେ ଯାଇ ସାରଙ୍କ ପାଖରେ ପହଞ୍ଚିଗଲି । ତା ପରଦିନ ମୋର ଗାଁକୁ ଯିବାର ଥିଲା । ସାରଙ୍କ ପାଖରେ ପହଞ୍ଚି ପ୍ରଣାମ କଲାପରେ ପାଖରେ ପଡ଼ିଥିବା ଚେୟାର୍ ଖଣ୍ଡକ ଟାଣିଆଣି ବସିବାକୁ ଇଙ୍ଗିତ ଦେଲେ । ଚେୟାର୍‌ରେ ବସୁବସୁ ପଚାରିଲେ କେବେ ଘରକୁ ଯିବୁ ? 'ଆସନ୍ତା କାଲି ଯାଉଛି । ମନ୍ଦିର ଭିତରେ ମାର୍ବଲ ବିଛା ହେବ । ଆଉ ଅଳ୍ପ କିଛି କାମ ବାକି ଅଛି । ପନ୍ଦର ଦିନ ପରେ ଫେରିବି ।' ଏତେ ଦିନ ଗାଁରେ ରହିଯିବୁ ବୋଲି ପଚାରିଲେ । ତାପରେ କେତେ କ'ଣ ପ୍ରଶ୍ନ । ପତିବାବୁଙ୍କ ଘରେ ସମସ୍ତ କିପରି ଅଛନ୍ତି ? ପ୍ରଫେସର ଶରତ ଦାଶ କେମିତି ଅଛନ୍ତି ? ସବୁଥର ପ୍ରାୟେ ତାଙ୍କ ସହକର୍ମୀମାନଙ୍କ କଥା ପଚାରିଥାଆନ୍ତି । ପତିବାବୁ ହେଉଛନ୍ତି ସ୍ୱର୍ଗତ ବିବେକାନନ୍ଦ ପତି । ଯିଏକି ତାଙ୍କର ଅନୁଗୁଳ ଟ୍ରେନିଂ କଲେଜରେ ସହକର୍ମୀ ଥିଲେ । ରାଧାନାଥ ଟ୍ରେନିଂ କଲେଜର ଅଧକ୍ଷ ଥିଲାବେଳେ ହଠାତ୍ ୧୯୮୧ ମସିହାରେ ତାଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ଦ୍ୱିତୀୟ ଝିଅ ମାନୁକୁ ସେ ସବୁବେଳେ ମା'ବୋଲି ଡାକନ୍ତି । ତେଣୁ ଚିରାଚରିତ ଢଙ୍ଗରେ- ମା' କେମିତି ଅଛି ? ସେଠାକୁ ଯାଇଥିଲୁ କି ନାହିଁ ପଚାରିଲେ । ମା'କୁ ଯେ ମୋ କଥା କହିବୁ କେବେ ଭୁବନେଶ୍ୱର ଆସିଲେ ଆମ ଘରକୁ ଆସିବାକୁ କହିବୁ । ଏମିତି କିଛି ସମୟ ଖଟରେ ବସି କଥାବାର୍ତ୍ତା ହେଉଥାନ୍ତି । ମଝିରେ ମଝିରେ ଆଖିବନ୍ଦ କରୁଥାନ୍ତି । କେତେବେଳେ ଆଖିଖୋଲି ଉପରକୁ ଚାହୁଁଥାଆନ୍ତି । ହଠାତ୍ ଅଧଘଣ୍ଟା ପାଖାପାଖି ତାଙ୍କ ପାଖରେ ବସିବା ପରେ ଘରକୁ ଯାଉଛି ବୋଲି କହିଲି । ମାତ୍ର ତାଙ୍କ ପାଟିରୁ ସେଦିନ କାହିଁକି କେଜାଣି ବାହାରିଲା - ଆଉ ଟିକେ ବସ୍ । ମୁଁ ପ୍ରାୟେ ଶହଶହ ଥର ତାଙ୍କ ପାଖକୁ ଯାଇଛି । ସେ ଅଧିକାଂଶ ସମୟରେ କହୁଥିଲେ ହଉ ଯାଆ । ମୁଁ ଟିକେ ଶୋଇବି । ପୁଣି କେବେ ଆସିବୁ । ମାତ୍ର ସେଦିନ ତାଙ୍କ ସ୍ୱର ଥିଲା ଭିନ୍ନ । କିଛି ସମୟ ନୀରବରେ ବସିବା ପରେ ପୁଣି ଯେତେବେଳେ କହିଲି ମୁଁ ଯାଉଛି, ଆପଣ ବିଶ୍ରାମ ନିଅନ୍ତୁ, ଆପଣଙ୍କୁ ନିଦ ଲାଗିଲାଣି । ଏତିକି ଶୁଣିବା ପରେ ପୁଣି ଥରେ କହିଲେ- ଆଉ ଟିକେ ମୋ ପାଖରେ ବସ୍ । ଡାକ୍ତର ରବିର ସ୍ତ୍ରୀକୁ ମା' ବୋଲି ଡାକନ୍ତି । ବୋହୂକୁ ଡାକି ମୋତେ ଲେମ୍ବୁପାଣି ଦେଇଛି କି ନାହିଁ ବୁଝିଲେ । ମୁଁ ତାଙ୍କ ଘରକୁ ଗଲେ ସକାଳେ ଲେମ୍ବୁ ପାଣି ପିଏ ବୋଲି ସେ ଦିଗରେ ସେ ଅଭ୍ୟସ୍ତ । କଥାବାର୍ତ୍ତା ହେଉଥିଲା ବେଳେ ସାର୍ ସେଦିନ କହିଥିଲେ- I am conscious that I am semi-conscious. ମନକୁ ମନ କହୁଥିଲେ- 'କେତେଦିନ ଆଉ ଖେଳୁଥିବୁ ଖେଳ, ଆସିଯିବ ତୋର ଅନ୍ତିମ ବେଳ' । କିଛି ସମୟ ପରେ କହିଲେ ଆଉ କିଛି ଭଲ ଲାଗୁନାହିଁ । ଇଚ୍ଛା ଥିଲା ଅନୁଗୋଳ, ସରୋ, ପୁରାତନ କର୍ମସ୍ଥଳୀକୁ ଦେଖିବାର । ତୁ କେମିତି ମନ୍ଦିର ଓ ଜରା ନିବାସ ଗାଁରେ କରୁଛୁ ଦେଖିବା ପାଇଁ । ଆଉ ଯାଇ ହେବ ନାହିଁ । ସବୁଦିନ ପରି ମଝିରେ ମଝିରେ ମହିମା ଅଲେଖ କହୁଥାଆନ୍ତି । ପୁଣି କହିଲେ- 'ପ୍ରାଣୀର ଆରତ ଦୁଃଖ ଅପ୍ରମିତ ଦେଖୁଦେଖୁ କେବା ସହୁ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ' । ଏହି ଉକ୍ତି ଅନେକ ଥର କହୁଥିବାରୁ ମୁଁ ଶୁଣିଛି । କିଛି ସମୟ ପରେ ସାର୍‌ଙ୍କ ଠାରୁ ବିଦାୟ ନେଇ ଆସିଲି । କାହିଁକି କେଜାଣି ସେଦିନ ସାର୍‌ଙ୍କ କଥା ସବୁ ଅଡୁଆ ଅଡୁଆ ଲାଗୁଥିଲା । ଘରକୁ ଫେରି ଘରେ ମଧ ସାର୍‌ଙ୍କ ବିଷୟରେ କହିଲି । ସେମାନଙ୍କ ବିଷୟ (ସ୍ତ୍ରୀ ଓ ବହୂ) ସାର୍ ସବୁଦିନ ପଚାରୁଥିଲେ । କିନ୍ତୁ ମନେମନେ ଭାବୁଥିଲି ସାର୍ କ'ଣ ଏତେ ଶୀଘ୍ର ଆମକୁ ଛାଡ଼ି ଚାଲିଯିବେ । ସତକୁ ସତ ମାର୍ଚ୍ଚ ୧୧ ତାରିଖ ଶନିବାର ସକାଳ ୭ଟାବେଳକୁ ଭୁବନେଶ୍ୱର ଘରୁ ଫୋନ୍ ପାଇଲି ସାର୍ ଚାଲିଗଲେ । ମନରେ ଖୁବ୍ ଯନ୍ତ୍ରଣା ହେଲା । କାରଣ ସାର୍‌ଙ୍କୁ କହି ଆସିଥିଲି ପନ୍ଦର ଦିନ ପରେ ଫେରିବି ବୋଲି । ମୁଁ ଘରକୁ ଆସିଥିଲି ଫେବୃୟାରୀ ୨୩ ତାରିଖ । ଠିକ୍ ପନ୍ଦର ଦିନ ପରେ ଯଦି ଯାଇଥାଆନ୍ତି, ତେବେ ଦଶତାରିଖ ସକାଳେ ସବୁଦିନ ଭଳି ସାର୍‌ଙ୍କୁ ଦେଖିବାକୁ ଯାଇଥାଆନ୍ତି । ପଦେଅଧେ ତାଙ୍କ କଥା ଶୁଣିଥାଆନ୍ତି । ମାତ୍ର ବିଧିର ଏ କି ନିର୍ଦ୍ଦେଶ । ଶେଷ ସମୟରେ ଟିକେ ଦେଖିବି ପାରିଲିନି ।

ଦୀର୍ଘ ୪୫ ବର୍ଷର ସଂପର୍କ ଭିତରେ ସାର୍‌ଙ୍କ ସହିତ ଅନେକ ବିଷୟ ଆଲୋଚନା ହୋଇଛି । ମୋର ଦୁର୍ଦ୍ଦିନ ବେଳେ ସାର୍ ସାନ୍ତ୍ୱନା ଦେଇଛନ୍ତି । ସବୁକଥା ଗୋଟିଗୋଟି ହୋଇ ମନରେ ଉଙ୍କିମାରିଲା । ମୋର ଏକମାତ୍ର ପୁଅର ମୃତ୍ୟୁ ଖବର ଶୁଣି ସେ ମୋ ଘରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ମୁଁ କୋହ ସମ୍ଭାଳି ପାରିଲି ନାହିଁ । ସେ ଛଳଛଳ ଆଖିରେ ମୋ ମୁଣ୍ଡରେ ହାତବୁଲାଇ ସାନ୍ତ୍ୱନା ପାଇଁ କହିଲେ । ଏହି ହାତରେ ଗଳାରେ ଫୁଲମାଳ ପିନ୍ଧାଇ ତାକୁ ବରବେଶରେ ଏଇ ଘରେ ସେଦିନ ପଠାଇଥିଲି । ଏମିତି ସମସ୍ତଙ୍କୁ ହତାଶ କରି ସେ ଚାଲିଗଲା । ମୋତେ ବୁଝାଇବା ଛଳରେ ସେ କହିଥିଲେ- ଶକ୍ତି ଅଛି ବସ କାହାର ଜଗତେ/ ନିୟତିକୁ ନେବ ନିଜ ଇଚ୍ଛା ମତେ । ମୋ ପୁଅ ମରିବାର ଏକମାସ ପରେ ମା' (ସାର୍‌ଙ୍କ ସ୍ତ୍ରୀ) ଚାଲିଗଲେ । ମୁଁ ସମ୍ବାଦ ପାଇଁ ଘରେ ପହଞ୍ଚିଲି । ମୋତେ ଦେଖି ସାର୍ ତାଙ୍କର ଚିରାଚରିତ ଢଙ୍ଗରେ କହିଲେ- ବେନିଜଣେ ପଡ଼ିଛି ସମଦଶା । ବସିବାକୁ କହି ସେପାଖରେ ବସିଲେ । ଜୀବନରେ ପ୍ରଥମଥର ପାଇଁ ତାଙ୍କ ଆଖିରେ ଅଶ୍ରୁ ଦେଖିଲି । ଜୀବନର ଅବିସ୍ମରଣୀୟ ସ୍ମୃତିର ଅନେକଅନେକ ପୃଷ୍ଠା ସେ ମୋ ପାଖରେ ଖୋଲିଦେଲେ । ମୋର ସେତେବେଳର ସନ୍ତପ୍ତ ହୃଦୟରୁ ଆବେଗଭରା କଣ୍ଠରେ କହିଲି- ଆପଣତ ମୋତେ ସେଦିନ ନିୟତିର ଉଦାହରଣ ଦେଇଥିଲେ । ସେ ପ୍ରକୃତିସ୍ଥ ହୋଇ ଦରଦଭରା କଣ୍ଠରେ କହିଲେ- ମୋତେ ହିଁ ମୋରି ବାଣ ମାରିଲୁ । ଏମିତି ଅସୁମାରୀ ସ୍ମୃତି ମନକୁ ଆସୁଛି । କୋହ ସମ୍ଭାଳିବା କଷ୍ଟକର ହେଉଛି । ମନେ ପଡ଼ିଯାଉଛି ସେହି ବାଣୀ -

'ବିଧି ଯାହା ଅତୀତରେ ଦେଲା ଦୟା କରି,
ସେହି ସ୍ମୃତି ଏବେ ଦଂଶେ ମନ
ଆଜିର ଏ ଦୁଃଖଠାରୁ ଗତ ସୁଖ ସ୍ମୃତି
ବେଶୀ ଆଜି କରଇ ଦହନ ।



# ଅମର ପ୍ରତିଭା

**ସୁଧାକର ରାଉତ**

ମଣିଷ ମରିଯାଏ । କିନ୍ତୁ ତା'ର ପ୍ରତିଭା ଅମର ରହେ । ଡକ୍ଟର ଶତ୍ରୁଘ୍ନ ନାଥଙ୍କ ପ୍ରତିଭା ଅମର । ନିପଟ ପଲ୍ଲୀ ଅଂଚଳର ଜଣେ ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରି ଉଚ୍ଚଶିକ୍ଷା ପାଇଁ ଲଣ୍ଡନ ଯିବା ଆଜିର ମଣିଷକୁ ଅବିଶ୍ୱାସ୍ୟ ଲାଗିବ । ନିଜର ଅଧ୍ୟବସାୟ, କର୍ତ୍ତବ୍ୟନିଷ୍ଠା ଓ ଶିକ୍ଷା ପ୍ରତି ଆନ୍ତରିକତା ତାଙ୍କୁ ଜଣେ ଶିକ୍ଷାବିତ୍ କରାଇପାରିଛି ।

କର୍ମମୟ ଜୀବନରେ ବିଭିନ୍ନ ଶିକ୍ଷା ସଂସ୍ଥାର ମୁଖ୍ୟ ଭାବରେ, ଜଣେ ସୁପ୍ରଶାସକ ଓ ସଂଗଠକ ଭାବରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । କର୍ମମୟ ଜୀବନ ମଧ୍ୟରେ ବିଭିନ୍ନ ପୁସ୍ତକ ରଚନା କରି ପାଠକଙ୍କର ମନକୁ କିଣି ପାରିଛନ୍ତି । ତାଙ୍କର ପ୍ରତିଭା ପାଇଁ ଭିନ୍ନଭିନ୍ନ କ୍ଷେତ୍ରରେ ସମ୍ମାନିତ ହୋଇଛନ୍ତି । ଏତେବଡ଼ ସମ୍ମାନର ଅଧିକାରୀଙ୍କ ସହ ଯେ ମିଶିଛି କେବେ ବିଶ୍ୱାସ କରିପାରିବ ନାହିଁ ଏତେ ସରଳ, ନିରାଡ଼ମ୍ବର ଜୀବନ ଅତିବାହିତ କରୁଥିଲେ । ନିଜ ଗାଁ ଛାଡ଼ି ସୁଦୂର ଭୁବନେଶ୍ୱରରେ ରହିଲେ ମଧ୍ୟ ସେ ନିଜର ଗାଁକୁ ଭୁଲି ନଥିଲେ । ଗାଁ ଲୋକଙ୍କୁ ଉଚ୍ଚଶିକ୍ଷିତ କରିବା ପାଇଁ ପ୍ରଥମେ ପ୍ରାଥମିକ ଶିକ୍ଷା ଉପରେ ଗୁରୁତ୍ୱ ଦେଇଥିଲେ । ତତ୍‌ପରେ ମହିଳାମାନଙ୍କୁ ସ୍ୱାବଲମ୍ବୀ କରାଇବା ପାଇଁ ଗ୍ରାମରେ ଏକ ବାଳିକା ହାଇସ୍କୁଲ ସ୍ଥାପନ କରାଇଥିଲେ । ଗାଁ ପିଲାମାନେ ଘରୁ ପଖାଳ ଖାଇ କିପରି ଉଚ୍ଚଶିକ୍ଷା ଲାଭ କରିବେ ସେଥିପାଇଁ ସାଳନ୍ଦୀ ମହାବିଦ୍ୟାଳୟ ସ୍ଥାପନ କରିଥିଲେ । ଖାଲି ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କଲେ ହେବ ନାହିଁ, ଉତ୍ତମ ଛାତ୍ର ସୃଷ୍ଟି କରିବାର ପ୍ରୟାସ ରଖି, ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ପ୍ରତିଯୋଗୀ ମନୋଭାବ ସୃଷ୍ଟି କରିବା ପାଇଁ ନିଜସ୍ୱ ଅର୍ଥରୁ ପ୍ରତିବର୍ଷ ମେଧାବୀ ଛାତ୍ରଛାତ୍ରୀଙ୍କ ବୃତ୍ତି ଦେବାର ବ୍ୟବସ୍ଥା କରିଥିଲେ । ସେ ରୋଟାରୀ କ୍ଲବ ଭଦ୍ରକ ମାଧ୍ୟମରେ ପ୍ରତିବର୍ଷ ଗଣିତ, ବିଜ୍ଞାନ, ସାହିତ୍ୟ, ଉତ୍ତମ ଚରିତ୍ର, ଅଧିକ ନମ୍ବର ରଖି ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରଛାତ୍ରୀଙ୍କୁ ପୁରସ୍କୃତ କରିବାର ବ୍ୟବସ୍ଥା କରିଯାଇଛନ୍ତି ।

ସେ ଗ୍ରାମବାସୀଙ୍କ ଆର୍ଥିକ ସ୍ଥିତି ବିଷୟରେ ଅବଗତ ଥିଲେ । ଗାଁ ଲୋକେ କିପରି ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ନହେବେ ସେଥିପାଇଁ ତତ୍‌କାଳୀନ ନଗରପାଳ ତଥା ବିଧାୟକ ସ୍ୱର୍ଗତ ବିରେନ୍ ପଲେଇଙ୍କ ଉଦ୍ୟମରେ ନିଜସ୍ୱ ଜମି ଉପରେ ନିଜ ପିତାଙ୍କ ନାମରେ ଏକ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା କରିଥିଲେ । ତାଙ୍କ ବାପା ଜଣେ କବିରାଜ ଥିବାରୁ ସେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉକ୍ତ ଚିକିତ୍ସାଳୟର ନାମ ଭିକାରୀଚରଣ ସେବାସଦନ ରଖିଥିଲେ ।

ମୁଁ ସେହି କୃତୀ ପୁରୁଷଙ୍କ ଜନ୍ମ ମାଟିର ଜଣେ ସନ୍ତାନ ଭାବରେ ନିଜକୁ ଗୌରବାନ୍ୱିତ ମନେ କରୁଛି । ତାଙ୍କ ସହ ମୋର ସଂପର୍କ ନିବିଡ଼ ଥିଲା । ମୋତେ ପୁଅ ପରି ସ୍ନେହ କରୁଥିଲେ । ଆଳାପ ମାଧ୍ୟମରେ କହୁଥିଲେ, 'ମୁଁ ମୋ ଗାଁ ଓ ମା'କୁ ଭୁଲିପାରିବି ନାହିଁ । ଏପର୍ଯ୍ୟନ୍ତ ମୁଁ ମଣିଆ ବୁଢ଼ାର ଡଙ୍ଗା ଘାଟ, ଗାଁ ବରଗଛ ଦୋଳି, ବାସି ପଖାଳ, ପୋଡ଼ା ବାଇଗଣ କଥା ଭୁଲି ନାହିଁ ।'

ବାସ୍ତବିକ ତାଙ୍କ ବିୟୋଗରେ ଆମ ଗାଁର ଜଣେ ଦିଗ୍‌ଦର୍ଶକଙ୍କୁ ହରାଇଛି । ଭଗବାନଙ୍କ ନିକଟରେ ପ୍ରାର୍ଥନା, ତାଙ୍କ ଭଳି ପୁଅଟିଏ ଜନ୍ମ ନିଅନ୍ତାକି, ଯେ ନିଜ ଗାଁ ଓ ମା'ର ସମ୍ମାନ ରଖନ୍ତା ।

ତାଙ୍କର ଅମର ଆତ୍ମାର ସଦ୍‌ଗତି ହେଉ । ଏହା ହିଁ ମା ଭଦ୍ରକାଳୀଙ୍କ ନିକଟରେ ପ୍ରାର୍ଥନା ।

**ସଭାପତି, ଜିଲ୍ଲା କଂଗ୍ରେସ କମିଟି, ଭଦ୍ରକ**





# ସେ ଆମର

**ସୁଧାକର ନନ୍ଦ**

ଶତ୍ରୁଘ୍ନ ଅର୍ଥାତ୍ ଶତ୍ରୁଙ୍କୁ ଯେ ହତ୍ୟା କରନ୍ତି । ତାଙ୍କ ନାମ ଅନୁସାରେ ସେ ଶତ୍ରୁହନ୍ତାର ସ୍ୱାମୀ ବା ନାଥ ।

କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ମୁଁ ତାଙ୍କୁ ସରସଦା ଓ ଭଣ୍ଡାରିପୋଖରୀରେ ୧୯୫୪ ମସିହାରୁ ଯେତିକି ନିବିଡ଼ ଭାବରେ ଜାଣିଛି, ସେ ଥିଲେ ଅଜାତ ଶତ୍ରୁ ଓ ସମସ୍ତଙ୍କର ନମସ୍ୟ । ସେତେବେଳେ ମୁଁ ଦ୍ୱିତୀୟ ଶ୍ରେଣୀରେ ପଢୁଥାଏ । ସେ ସରସଦା ସ୍କୁଲରେ ଆମ ବଡ଼ କ୍ଲାସ ପିଲାମାନଙ୍କୁ ପଢ଼ାଉ ଥାଆନ୍ତି ।

ଭଣ୍ଡାରିପୋଖରୀ ପାଳଦା ବେସିକ୍ ସ୍କୁଲ ଯାହା ବର୍ତ୍ତମାନ ସରକାରୀ ମି.ଇ. ସ୍କୁଲକୁ ପରିବର୍ତ୍ତିତ ହୋଇଛି, ତାହା ସେହି ଅଜାତଶତ୍ରୁଙ୍କ ଦାନ ।

ମୋ ନନା ୰ ଧନେଶ୍ୱର ନନ୍ଦ, ୰ ଜଗନ୍ନାଥ ନାୟକ, ୰ ଧନେଶ୍ୱର ଦାଶ ଆଦି ତାଙ୍କର ସହକର୍ମୀମାନେ ଚାଲିଗଲେଣି । କେବଳ ଅଛନ୍ତି ସରସଦାର ଭୂମିପୁତ୍ର ପିତାମହ ଭୀଷ୍ମ ଶ୍ରୀଯୁକ୍ତ ଚିନ୍ତାମଣି ନାୟକ । ସରସଦା ମାଇନର ସ୍କୁଲର ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଲାବେଳେ ସେ ଆସିଥିଲେ ।

ତାଙ୍କର ମହାପ୍ରୟାଣ ସମ୍ବାଦ ତାଙ୍କ ପୁଅ ଡାକ୍ତର ରବିଙ୍କୁ ଯେତିକି ବ୍ୟଥା ଦେଇଥିବ, ସରସଦା ଓ ଭଣ୍ଡାରିପୋଖରୀର ପ୍ରତ୍ୟେକ ଲୋକଙ୍କୁ ସେହି ଅନୁପାତରେ କମ୍ କଷ୍ଟ ଦେଇ ନାହିଁ । ଆମେ ସମସ୍ତେ ତାଙ୍କ ପରିବାରର ଜଣେଜଣେ ବୋଲି ଭାବୁ ।

ଆଜି ଈଶ୍ୱରଙ୍କୁ ପ୍ରାର୍ଥନା ନକଲେ ବି ତାଙ୍କ ଆତ୍ମା ଶାନ୍ତି ଲାଭ କରିବ, ଏ ଦୃଢ଼ ବିଶ୍ୱାସ ମୋର ଅଛି । ତଥାପି ମୁଁ ପରମାତ୍ମାଙ୍କୁ ପ୍ରଣାମ ଜଣାଇ ତାଙ୍କ ଶ୍ରୀଚରଣରେ ପ୍ରାର୍ଥନା କରୁଛି ଏ ଆତ୍ମା ଶରୀରର ତ୍ୟାଗ କଲା ପରେ ଯଦି ପୁଣି ମୋତେ ମଣିଷ ଜନ୍ମ ମିଳେ, ତେବେ ସେଇ ଅଜାତ ଶତ୍ରୁଙ୍କ ସନ୍ତାନ ଭାବେ ଜନ୍ମ ହେବାକୁ ସୁଯୋଗ ମିଳିଲେ ଯାଇ ମୁଁ କୃତାର୍ଥ ହେବି ।

# ସମସ୍ତେ ଚାଲିଗଲେଣି

**ଡକ୍ଟର ବାଇଧର ସାହୁ**

ବାବୁ ଓ ଅଂଙ୍କୁ ଚିରମାନ୍ୟ, ଚିରପୂଜ୍ୟ, ଚିରବରେଣ୍ୟ ସ୍ୱର୍ଗତ ଶତ୍ରୁଘ୍ନ ନାଥଙ୍କର ପୁଅଝିଅ ମଧ୍ୟରୁ ଦୁଇଟି । ଏହି ଦୁଇଜଣଙ୍କୁ ଟ୍ୟୁସନ୍ ପଢ଼ାଇବାକୁ ମୁଁ ତାଙ୍କ ଘରକୁ ଯାଏ ।

ମାତା ପିତା ସନ୍ତାନ ସକାଶେ ପରମେଶ୍ୱରଙ୍କ ନିକଟରେ ଦାୟୀ । ପିତୃତ୍ୱ ଓ ମାତୃତ୍ୱ କାର୍ଯ୍ୟ ଯେଉଳି ମହାନ, ସେଉଳି ସୁନ୍ଦର ଓ ହିତକର । ସେ ମୁହଁରେ ଏକଥା କହୁନଥିଲେ, ମାତ୍ର କାର୍ଯ୍ୟରେ ଫଳାଇଛନ୍ତି । ସକାଳ ୭ଘଟିକାରେ ଟ୍ୟୁସନ୍ ପଢ଼ାଇବାକୁ ପହଞ୍ଚିବା ମାତ୍ରେ ଅଗଣାରେ ୨/୪ଜଣ ଅଧ୍ୟାପକଙ୍କ ସହ ଆଲୋଚନା କରୁଥିବା ଅଧ୍ୟକ୍ଷ ଶ୍ରୀଯୁକ୍ତ ନାଥ ଜବାବ୍ ଦିଅନ୍ତି- 'ସାର୍ ଆସିଲେଣି ।'

ସେ ଭଦ୍ରକ କଲେଜର ପୂଜ୍ୟ ଅଧ୍ୟକ୍ଷ । ମୁଁ ଜଣେ ଲାବୋରେଟୋରି ଆସିଷ୍ଟାଣ୍ଟ । କୃତଜ୍ଞତାରେ ଦେହ ଓ ମନ ନଇଁ ପଡ଼େ, ପ୍ରଣାମ ଜଣାଇ ପଢ଼ାଇବାକୁ ଆଗେଇ ଯାଏ ।

ଦୁଇଟି କଥା- ଘରୋଇ ଟ୍ୟୁସନ ପଢ଼ାଇବାରେ ପାଠ ପଢ଼ାଇବା ପାଇଁ ପିତାମାତାଙ୍କର ଯେତିକି ଆଗ୍ରହ ଥାଏ, ବେଶିଥାଏ ସେମାନଙ୍କର ପୁଅଝିଅ କିପରି ନିଜକୁ ନିଜେ ଉନ୍ନତ କରାଇବା ପାଇଁ ଯତ୍ନଶୀଳ ହେବେ । ବୃକ୍ଷକୁ ତରୁଣ ଓ କୋମଳ ଅବସ୍ଥାରେ ଯେବେ ସଳଖ ଭାବରେ ବଢ଼ିବାକୁ ଦିଆଯାଏ, ସେ ବଢ଼ିଯାଏ ଉପରକୁ ଓ ଉପରକୁ । ଶିଶୁର ତରୁଣ ଓ କୋମଳ ଅବସ୍ଥାରେ ପିତାମାତାଙ୍କର ସେମାନଙ୍କର ଶିକ୍ଷକମାନଙ୍କୁ ଯେଉଁ ସମ୍ମାନ ଓ ବ୍ୟବହାର ପ୍ରଦର୍ଶନ କରନ୍ତି, ତାହାର ପ୍ରତିଫଳନ ଘଟେ ଛାତ୍ରଛାତ୍ରୀମାନଙ୍କ ଉପରେ । ଶିକ୍ଷାବିତ୍ ସ୍ୱର୍ଗତ ଶତ୍ରୁଘ୍ନ ନାଥଙ୍କର ପୁଅଝିଅଙ୍କର ଘରୋଇ ଶିକ୍ଷକର ସୁଯୋଗ ପାଇ ମୁଁ ଯାହା ଶିକ୍ଷାଲାଭ କଲି ତାହା ତାଙ୍କର ପିଲାପିଲିଙ୍କ ଉପରେ ପ୍ରଭାବ ପଡ଼ିଛି ସତ, ତାହା ବ୍ୟତୀତ ଆଉ ଯେଉଁ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କର ଘରୋଇ ଶିକ୍ଷକର ସୁଯୋଗ ପାଇଲି ଯେଉଁମାନେ ବଡ଼ବଡ଼ ପଦପଦବୀରେ ଅଭିଷିକ୍ତ ।

ବର୍ତ୍ତମାନ ରାଜସ୍ୱ ମନ୍ତ୍ରୀ ମନମୋହନ ସାମଲଙ୍କ ପିତା ୰ ଜମ୍ବୁ ସାମଲ ନାହାନ୍ତି, ଆଡ୍‌ଭୋକେଟ୍ ରାୟ ରାମାନନ୍ଦ ମହାପାତ୍ରଙ୍କ ପିତା ୰ ଦେବାନନ୍ଦ ମହାପାତ୍ର ନାହାନ୍ତି, ଶ୍ରୀ ପର୍ଶୁରାମ ଦ୍ୱିବେଦୀଙ୍କ ପିତା ୰ ଅଭିମନ୍ୟୁ ଦ୍ୱିବେଦୀ ନାହାନ୍ତି, ସମସ୍ତେ ଚାଲିଗଲେଣି । ଏକ ସମୟରେ ସମସ୍ତେ ବନ୍ଧୁ ଥିଲେ । ପୃଥିବୀଠାରୁ ଆରମ୍ଭ କରି ଈଶ୍ୱର ପର୍ଯ୍ୟନ୍ତ ସମସ୍ତ ପଦାର୍ଥର ଯଥାର୍ଥ ଜ୍ଞାନ ସଂପର୍କରେ, ତାର ପ୍ରୟୋଗ ସଂପର୍କରେ, ମନରେ ଯାହା ବଚନରେ ତାହା, ବଚନରେ ଯାହା କର୍ମରେ ତାହା, ଆଚରଣ କରିବାକୁ ଯେ ସର୍ବଦା ଚେଷ୍ଟିତ ଥିଲେ ସେ ହେଲେ ବିଦ୍ୟାର ପୂଜାରୀ ସ୍ୱର୍ଗତ ଶତ୍ରୁଘ୍ନ ନାଥ । ସେ ମଧ୍ୟ ଚାଲିଗଲେ ।

**ଅଧ୍ୟାପକ, ସାଲନ୍ଦୀ ମହାବିଦ୍ୟାଳୟ, ଭଦ୍ରକ**



# ବନ୍ଦେ ଗୁରୁଣାଂ ଗୁରୁଃ

**ଦୀନବନ୍ଧୁ ମିଶ୍ର**

ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ବିବିଧ ସଂସ୍କାର ଆଣିଥିବା ସ୍ୱନାମ ଧନ୍ୟ ପ୍ରଜ୍ଞା ପୁରୁଷ ଶତ୍ରୁଘ୍ନ ନାଥ ଆଜି ଆମ ଗହଣରେ ନାହାନ୍ତି । ଭାଷା, ସାହିତ୍ୟ ତଥା ଶିକ୍ଷାକୁ ଲୋକାଭିମୁଖୀ କରି ସାମାଜିକ ମୂଲ୍ୟବୋଧ ପ୍ରଦାନ କରିବାରେ ଯେଉଁ କେତେଜଣ ସିଦ୍ଧ ପୁରୁଷ ଓଡ଼ିଶାର ଜନମାନସରେ ସ୍ଥାନ ପାଇଆସିଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ନାଥ ସାହେବ ଅନ୍ୟତମ । ଏବେ ଖୋଜିଲେ ମିଳିବନି ସେହି ଭଳି ଜଣେ ଶିକ୍ଷକ, ଶୁଭିବନି ତାଙ୍କ ଭଳି ସୁକୋମଳ, ସୁଶ୍ରାବ୍ୟ, ସ୍ନେହପୂର୍ଣ୍ଣ ସମ୍ବୋଧନର ଭାଷା । ଆହାଃ ! କାହୁଁ ମିଳିବ ସେହିପରି ପୋଷାକର ମଣିଷଟିଏ । ସେହିଭଳି ଶିକ୍ଷାଦାନ କରୁଥିବା ସତ୍ୟ, ଶାନ୍ତି, ଦୟା, କ୍ଷମାର ପ୍ରତୀକ କୁଶଳୀ ଶିକ୍ଷକଟିଏ, ଅବା ସେହିଭଳି ଅନୁକରଣୀୟ ସ୍ୱଭାବ ଓ ଆଚରଣର ଆଦର୍ଶ ଜୀବନ୍ତ ପ୍ରତିମାଟିଏ । ହେ ମୋର ପ୍ରିୟ ସର୍ବଜନ ପ୍ରିୟ ସାଧକ ! ଆପଣଙ୍କ ଦୀର୍ଘ ବର୍ଷ ସାଧନାର ସୁଧାବିନ୍ଦୁ, ଶିକ୍ଷା, ଶିକ୍ଷକ, ଶିକ୍ଷାୟତନକୁ ଆଉ କ'ଣ ସିକ୍ତ ଋଦ୍ଧିମନ୍ତ କରିବ ନାହିଁ ?

ମନେପଡ଼େ ସେଦିନର କଥା, ଯେଉଁ ଦିନ ଆପଣଙ୍କୁ ପ୍ରଥମ ଥର ଦେଖିଥିଲି ଆପଣଙ୍କ ନିଜ ଘରେ ଉତ୍ତରବାହିନୀ ଗାଁରେ । ସେଦିନ ଆପଣଙ୍କ ସହାସ୍ୟ ମୁଖମଣ୍ଡଳର ଉଦ୍‌ଭାସିତ ପ୍ରତିଭା ଆଗରେ ନଇଁ ଯାଇଥିଲା ମୋର ମଥା । ଆପଣଙ୍କ ସେଇ କ୍ଷଣର ଉପଦେଶ ତଥା ପ୍ରେରଣା ଆଣିଦେଇଥିଲା ମୋ ଜୀବନର ସାର୍ଥକତା । ପ୍ରକାରାନ୍ତରେ ମୁଁ ହୋଇଗଲି ଆପଣଙ୍କର ଶିଷ୍ୟ ଓ ଆପଣ ମୋର ଗୁରୁ । ମୋର ଦିଗ୍‌ଦର୍ଶକ ମୋର ସବୁକିଛି । ଅନୁଗୁଳ ଟ୍ରେନିଂ କଲେଜରୁ ଆପଣଙ୍କ ପ୍ରଦତ୍ତ ଜ୍ଞାନ କୌଶଳକୁ ଆଧାର କରି ଦୀର୍ଘ ୩୦ବର୍ଷ ଆପଙ୍କ ଉଦ୍ୟମରେ ପ୍ରତିଷ୍ଠିତ କାହ୍ନୁଚରଣ ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟକରି ଏବେ ମୁଁ ଅବସରପ୍ରାପ୍ତ । ଅବସର ପରେ ମଧ୍ୟ ମୁଁ ଆପଣଙ୍କୁ କି ଆପଣ ମୋତେ ଛାଡ଼ୁ ନାହାନ୍ତି । ଏବେ ବି ମୁଁ ବାନ୍ଧି ହୋଇ ରହିଛି ଆପଣଙ୍କ ପରିବାରର ବନ୍ଧନରେ ।

ହେ ମୋର ପିତୃ ପ୍ରତିମ ଦିବଂଗତ ଗୁରୁ ! ଆପଣଙ୍କ ଅମର ଆତ୍ମା ସଦ୍‌ଗତିପ୍ରାପ୍ତ ହେଉ । ଆପଣଙ୍କ ଆଶୀର୍ବାଦ ସ୍ୱର୍ଗଲୋକରୁ ଆମମାନଙ୍କୁ ଉପରେ ଝରିପଡ଼ୁ ।

ବନ୍ଦେ ଗୁରୁଣାଂ ଗୁରୁଃ । ଶ୍ରୀ ଗୁରବେ ନମଃ ।

**ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ**
**କାହ୍ନୁଚରଣ ଉଚ୍ଚବିଦ୍ୟାଳୟ, ଉତ୍ତରବାହିନୀ, ଭଦ୍ରକ**

# ଜ୍ଞାନ ପିପାସୁ ଶତ୍ରୁଘ୍ନ ନାଥ

**ଅପୂର୍ବ ରଂଜନ ରାୟ**

ସେ ଏକ ଅନୁଷ୍ଠାନ । ଜୀବନ ବିତିଯାଇଛି ଶିକ୍ଷା ଗ୍ରହଣ ଓ ଶିକ୍ଷାଦାନରେ । ମଣିଷ ତ ଅନେକ, ଶିକ୍ଷକ ବି ଅନେକ । ତେବେ ତାଙ୍କପରି ମଣିଷ ଓ ତାଙ୍କ ପରି ଶିକ୍ଷକ ଜଣେ ସମାଜରେ ମିଳିବା କଷ୍ଟକର ବ୍ୟାପାର । ମଣିଷକୁ ଚିହ୍ନିଥିବା ମଣିଷ ସେ । ମୌଳିକ ଶିକ୍ଷାର ବାସ୍ତବ ସେବକ ଥିଲେ । ନିଜ କାମ ନିଜ ହାତରେ କରିବା ପାଇଁ ସାଧନା କରିଥିଲେ । କାହା ଉପରେ ନିର୍ଭରଶୀଳ ନୁହନ୍ତି । ଘଟଣାଟିଏ । ସେତେବେଳେ ଭଦ୍ରକ କଲେଜକୁ ସରକାରଙ୍କ ନିର୍ଦ୍ଦେଶ କ୍ରମେ ଅଧ୍ୟକ୍ଷ ହୋଇ ଆସିଥାଆନ୍ତି । ମୁଁ ସକାଳୁ ପରିବା କିଣିବା ପାଇଁ ବଜାର ଯାଇଥାଏ । ଜହ୍ନି ଦୋକାନରେ ନଇଁ ପଡ଼ି ଜହ୍ନି ବାଛୁଥିବାବେଳେ ପିଠିରେ କିଏ ନରମ ଚାପୁଡ଼ାଏ ଦେଲେ । ଆଉଁସିଲା ପରି ଅବଶ୍ୟ ଲାଗିଲା । ଉହିଁଲା ବେଳକୁ ସାର୍ । ନମସ୍କାର କରିବା ମାତ୍ରେ ପ୍ରତିନମସ୍କାର କରି ତାଙ୍କ ଦୁଇଟି ହାତରେ ମୋ ହାତକୁ ଜାବୁଡ଼ି ଧରିଲେ ।

ଏତେ ବଡ଼ ଖ୍ୟାତି ସଂପନ୍ନ ବିଦ୍ୱାନ, ସେ ପରିବା ହାଟରେ ! ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । 'କ'ଣ ସବୁ କିଣିଲେ । ଜହ୍ନି ନିଅନ୍ତୁ । ଖାଇବା ପାଇଁ ସୁଆଦିଆ ଓ ଦେହ ପାଇଁ ଭଲ ।' ନରମ ସ୍ୱରରେ ଦିପଦ କଥା ।

ବୁଝିଲି ସେ ନିଜେ ପରିବା ପାଇଁ ଆସନ୍ତି । ଅନ୍ୟାନ୍ୟ ଜିନିଷ ପତ୍ର ମଧ୍ୟ କିଣନ୍ତି । କେବେ ଏଥି ପାଇଁ ପିଅନ ବା ଚପରାଶିକୁ ବ୍ୟବହାର କରିନାହାନ୍ତି । ମୁଣ୍ଡ ନଇଁ ଯାଏ । ସକାଳ ହେବାମାତ୍ରେ ପିଲାମାନଙ୍କ ଚିନ୍ତା । ବାହାରେ ରହୁଥିବା ଅନ୍ତେବାସୀଙ୍କ ଛାତ୍ରାବାସ ବୁଲନ୍ତି । କିଏ କେମିତି ରହୁଛନ୍ତି, ଖାଉଛନ୍ତି କ'ଣ । କିଛି ଅସୁବିଧା ହେଉଛି କି ? ଏସବୁ ପ୍ରତି ତାଙ୍କର ଧ୍ୟାନ ଥାଏ । ଅଧ୍ୟକ୍ଷ, ଅଧ୍ୟାପକ କେବଳ ପଢ଼ାଇଲେ ହେବ ନାହିଁ, ନିଜକୁ ସରକାରଙ୍କ କର୍ମଚାରୀ ଭାବିଲେ ଚଳିବ ନାହିଁ । ଏହା ସହିତ ଆହୁରି ଅନେକ ଗୁଣର ଅଧିକାରୀ ହେବାକୁ ପଡ଼ିବ । ତାହା ସେ ଭଲଭାବେ ଜାଣିଥିଲେ । ବ୍ୟକ୍ତିତ୍ୱ ଗଠନ ଥିଲା ତାଙ୍କର ବ୍ରତ । ମୋ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ ବହୁକାଳରୁ । ୨୦୦୧ ମସିହାରେ ତାଙ୍କୁ ଭଦ୍ରକ ପୂଜ୍ୟପୂଜା ସଂସଦ ପକ୍ଷରୁ ମର୍ଯ୍ୟାଦା ଜନକ 'ବିଜୟା ସମ୍ମାନ' ଦିଆଯାଇଥିଲା । ତାଙ୍କ ଭୁବନେଶ୍ୱର ବାସଭବନକୁ ଯାଇ ନିମନ୍ତ୍ରଣ କଲାମାତ୍ରେ ସେ ଉତ୍ତର ଦେଲେ, 'ଏ ସମ୍ମାନ ଅନ୍ୟ କାହାକୁ ଦିଅନ୍ତୁ । ମୁଁ କ'ଣ ଏହା ପାଇବାକୁ ଭାଜନ ।' ତାଙ୍କ ନମ୍ରତା ପାଖରେ ନତମସ୍ତକ ହେଲି । ଅନେକ ଅନୁରୋଧ ପରେ ସେ ସମ୍ମତ ହେଲେ । ପୁରସ୍କାର, ସମ୍ମାନ, ସମ୍ବର୍ଦ୍ଧନା ଠାରୁ ଯିଏ ବହୁ ଦୂରରେ, ଏଥିପାଇଁ ଯିଏ ବ୍ୟାକୁଳତା ପ୍ରକାଶ କରନ୍ତି ନାହିଁ, ସେ ସର୍ବଜନ ପୂଜିତ, ପ୍ରଣମ୍ୟ, ଜ୍ଞାନ ପିପାସୁ, ପ୍ରଜ୍ଞା ପୁରୁଷ । ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଜଣେ ମହାନ, ଉଦାର ଓ ଆଜୀବନ ଜ୍ଞାନ ପାଗଳଙ୍କୁ ହରାଇବାକୁ ପଡ଼ିଲା । ତାଙ୍କ ଆଦର୍ଶ ସମାଜ ପାଇଁ ଦିଗ୍‌ଦର୍ଶକ ହେଉ ରହୁ । ଏହା ହିଁ ମୋର କାମନା ।

ଭଦ୍ରକ



# ଧର୍ମସ୍ୟ ତତ୍ତ୍ୱ ନିହିତଂ ଗୁହାୟ

**ମହେନ୍ଦ୍ର ପ୍ରସାଦ ରାଉତ**

ଏଗାର ତାରିଖ ସକାଳ ୯ଟାରେ ଖବର ମିଳିଲା ପ୍ରଫେସର ଶତ୍ରୁଘ୍ନ ନାଥ ଆଉ ନାହାନ୍ତି । ସଙ୍ଗେ ସଙ୍ଗେ ଫୋନ୍ ସଂଯୋଗ କଲି, ବହୁ ସମୟ ପରେ ଖବର ମିଳିଲା ଶବ ଶୋଭାଯାତ୍ରା ବାହାରି ଗଲାଣି । ଅନେକ ଆଶା ଆଶାରେ ରହିଗଲା । ସେଦିନ କଟକ ଆକାଶବାଣୀ ତାର ଆଞ୍ଚଳିକ ସମ୍ବାଦର ଅଧା ସମୟ ପ୍ରଫେସର ନାଥଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି କୃତଜ୍ଞତା ପ୍ରକାଶ କରିଥିଲା । ରବିବାର ଦିନ ପ୍ରାତଃ ଭ୍ରମଣରୁ ଫେରିବାବେଳେ ବାଟରେ ଏଇ ଅଞ୍ଚଳର କେତେକ ପାଠୁଆ ଲୋକଙ୍କ ସହ ସାକ୍ଷାତ ହେଲା । ସମସ୍ତଙ୍କୁ ନିବେଦନ କଲି ଅନ୍ତତଃ ତିନିଦିନ ଶୋକ ପାଳନ କରାଯାଉ । ଜଣେ କହିଲେ ଆସନ୍ତା କାଲି ହାଇସ୍କୁଲରେ ଶୋକ ସଭା ହେବ । ଆଶ୍ୱସ୍ତ ହେଲି, ପରେ ଜାଣିଲି ସେ ସବୁର ନାଁ ଗନ୍ଧ ନାହିଁ ଏପର୍ଯ୍ୟନ୍ତ ।

ଆଉ ଜଣେ କହିଲେ, ସେ ଆମ ଅଞ୍ଚଳ ପାଇଁ କ'ଣ କରିଛନ୍ତି କି ? ମୋ ଗାଲରେ ଲାଗୁଥିଲା ଯେମିତି କିଏ ତା ପାଦୁକାରେ ପ୍ରହାର କରୁଛି । ନିଜକୁ ସମ୍ଭାଳି ନେଇ ମୁଁ କହିଲି, ଆମ ଗାଁରେ ଯେଉଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଦେଖୁଛ ତାକୁ କିଏ ବସେଇଥିଲେ ? ଉତ୍ତର ମିଳିଲା ତାକୁ ପରା ମହନ୍ତ ବସାଇଥିଲେ । ଗୋଡ଼ ତଳୁ ମୋର ମାଟି ଖସିଖସି ଯାଉଥିଲା ।

ଏବେ ବି ସେ ଦୃଶ୍ୟ ଭୁଲିବାର ନୁହେଁ । ୧୯୬୦ ମସିହା ଜୁନ୍ ୧୫ ତାରିଖ । ରଜର ଦ୍ୱିତୀୟ ଦିନ । ଉତ୍ତରବାହିନୀ ପଡ଼ିଆରେ ସ୍ୱର୍ଗତ ବାଞ୍ଛାନିଧି ସ୍ୱାଇଁ, ଗଣେଷ ରାଉତ, ସୁରେନ୍ଦ୍ର ପ୍ରସାଦ ରାଉତ ଓ ମୁଁ ପେଟ୍ରୋମାକ୍ସ ଲାଇଟ ଜାଳି ତାସ୍ ଖେଳୁଥିଲୁ । ଆମକୁ ଜଣାଥିଲା ନାଥ ସାର୍ ତାଙ୍କ ଘରେ ଅଛନ୍ତି । ସେ ସାଧାରଣତଃ ବାହାରକୁ ବାହାରନ୍ତି ନାହିଁ । ସେ କେତେବେଳେ ଆସି ମୋ ପଛରେ ଠିଆହୋଇଛନ୍ତି ଆମକୁ ଜଣାନାହିଁ । ପ୍ରଥମେ ମୋ ସାମ୍ନାରେ ବସି ଖେଳୁଥିବା ଗଣେଷ ରାଉତ ତାଙ୍କୁ ଦେଖି ତାସ୍ ଲୁଚାଇ ଦେଲେ । ତାଙ୍କ ପାଳି ତାସ୍ ପକାଇବାର ପଡ଼ିବାରୁ ମୁଁ ପାଟି କଲି- 'ପକାଉନୁ କାହିଁକି ?' ସ୍ୱର୍ଗତ ସ୍ୱାଇଁ ମୋତେ କହୁଣୀ ଭୂଷାରେ ନାଥ ସାହେବଙ୍କ ଉପସ୍ଥିତି ସୂଚାଇ ଦେଲେ ।

ସେ ଆଗରୁ ଏ ଅଞ୍ଚଳର କେତେକ ବିଶିଷ୍ଟ ଲୋକଙ୍କ ନାଁ ତାଲିକା କରି ରଖିଥିଲେ । ନିର୍ଦ୍ଦେଶ ଦେଲେ- ଆସନ୍ତା କାଲି ଅପରାହ୍ନ ୪ଟାରେ ମୋ ଘରେ ଏକ ସଭାରେ ଯୋଗଦେବା ପାଇଁ ଏଇ ନୋଟିସ୍‌ଟି ବୁଲାଇ ଆଣ । ଏହି ଠାରୁ ଜନ୍ମ ନେଲା କାହ୍ନୁଚରଣ ମଧ ଇଂରାଜୀ ବିଦ୍ୟାଳୟ । ପରିବର୍ତ୍ତିତ ପରିସ୍ଥିତିରେ ସେହି ବାଳିକା ବିଦ୍ୟାଳୟଟି ଆଜି ଉଚ୍ଚ ଇଂରାଜୀ ସାଧାରଣ ବିଦ୍ୟାଳୟର ରୂପ ନେଇଛି । ତାର ପ୍ରଚ୍ଛଦ ପଟରେ ରହି ସେହି ମହାନ ବ୍ୟକ୍ତି ହିଁ ଇଙ୍ଗିତ ଦେଉଥିଲେ । ବିଦ୍ୟାଳୟ ଗୃହ ପାଇଁ ଜମି ଦରକାର । ମହନ୍ତଙ୍କର ଏଠାରେ ବହୁତ ଜମି ଥିଲା । ତାଙ୍କୁ ଜମି ପାଇଁ ଅନୁରୋଧ କରିବାରୁ ତାଙ୍କ ନାମରେ ବିଦ୍ୟାଳୟଟି କଲେ ସେ ଜମି ଯୋଗାଇଦେବେ ବୋଲି ସର୍ତ୍ତ ଆରୋପ କରିବାରୁ ବିଦ୍ୟାଳୟ ଅଧୁନା ମହନ୍ତ ମହାରାଜାଙ୍କର ନାମ ଧାରଣ କରିଛି । କିନ୍ତୁ ତାଙ୍କର ମାନସ ପିତାଙ୍କର ସେଠି ନାମ ଗନ୍ଧ ନାହିଁ ।

ବର୍ଷରେ ଥରେ ସେ ଗାଁକୁ ଆସୁଥିଲେ ତାଙ୍କ ବାପାଙ୍କ ଶ୍ରାଦ୍ଧରେ । ପାଖଆଖ ତିନିଚାରିଟି ବିଦ୍ୟାଳୟର ପିଲାମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କରୁଥିଲେ । ତାଙ୍କ ସହ ଶେଷ ଦେଖା ହୋଇଥିଲା ତାଙ୍କ ବାପାଙ୍କ ନାମରେ ସ୍ଥାପିତ ସ୍ୱାସ୍ଥ୍ୟ ସେବା କେନ୍ଦ୍ରର ଉନ୍ମୋଚନ ଉତ୍ସବରେ । ସନ୍ଧ୍ୟାରେ ଉନ୍ମୋଚନ, ତା' ପୂର୍ବରୁ ଟିକିଏ ଦର୍ଶନ ପାଇଁ ବାହାରିଲି । ସେ ତାଙ୍କ ପୁରୁଣା ଘର ଭିତରେ ଏକ ପ୍ରଶସ୍ତ ବାରଣ୍ଡାରେ ବସିଥାଆନ୍ତି । ତାଙ୍କୁ ଘେରି ରହିଥାଆନ୍ତି ଏହି ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତି । ପାଖରେ ଝିଅ ଜ୍ୱାଇଁ ଥାଆନ୍ତି । ଟିକିଏ ଦୂରରେ ତାଙ୍କ ସ୍ତ୍ରୀ ବସିଥାନ୍ତି । ମୁଁ ତାଙ୍କ ସ୍ତ୍ରୀଙ୍କୁ ପ୍ରଣାମ କଲି । ସେ ହଠାତ୍ ପାଟି କରି ଡାକିଲେ, 'ହେଇଟି, ଶୁଣୁଛ ! ଦେଖ କିଏ ଆସିଛି ।' ସେ ମୋ ଆଡ଼କୁ ଦୃଷ୍ଟି ଫେରାଇଲେ । ମୁଁ ବିନମ୍ର ପ୍ରଣାମ ନିବେଦନ କଲି । ଉତ୍ତରରେ ସେ ଯାହା କହିଲେ ଲାଜରେ ମୁଁ ଝାଳେଇ ଗଲି ।

ଆପ୍ତବାଣୀ କହେ – ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ – ମହାଜନୋ ଯେନ ଗତଃସ ପନ୍ଥା । ଏହି ଭାବନାକୁ ଆଧାର କରି ତାଙ୍କର ପୁଅକୁ ରୋଗୀ ସେବାରେ ଯେ କେବଳ ନିୟୋଗ କରିଛନ୍ତି ତାହା ନୁହେଁ, ଜ୍ୱାଇଁ ବାଛିଛନ୍ତି ଜଣେ ବିଖ୍ୟାତ ଡାକ୍ତର ।

ତାଙ୍କର ଅନ୍ତିମ ଇଚ୍ଛା ପୂରଣ ପାଇଁ ତାଙ୍କ ବାପାଙ୍କ ନାମରେ ଗୋଟିଏ ଡାକ୍ତରଖାନା ପାଇଁ କିଛି ଜମି ଦାନ କରିଛନ୍ତି । ଭଦ୍ରକ ପୌରପାଳିକା ଦ୍ୱାରା ସେଠାରେ ଏକ ପକ୍କା ଗୃହ ନିର୍ମାଣ କରାଯାଇ ଏ ଅଞ୍ଚଳର ରୋଗୀମାନଙ୍କ ସେବାରେ କିଛିକାଳ ନିୟୋଜିତ ଥିଲା ।

ରାଜନୈତିକ ପଶାପାଲିରେ ତାଙ୍କର ସେ ଅନ୍ତିମ ଇଚ୍ଛାର ଗୃହଟି ବର୍ତ୍ତମାନ ଏକ ଭୂତ କୋଠି ।

ସତରେ ମୃତ୍ୟୁ ବେଳକୁ ଏ ଘଟଣାଟି ତାଙ୍କୁ କେତେ ମର୍ମାହତ କରି ନଥିବ, ତାହା ସେ ମହାନ୍ ଆତ୍ମାଙ୍କୁ ଜଣା ।

**ବାଲିପାଟଣା, ଭଦ୍ରକ**



# ଗୁରୁ ସେ ମହାନ

ମୁରଲୀଧର ପଣ୍ଡା

ଫଗୁଣ ମାସ ଛବିଶ ଦିନ ଶୁକ୍ଳ ପକ୍ଷ ଏକାଦଶୀ ତିଥି ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ରାତ୍ରି ୧୧ ଘଟିକା ୩୦ ମିନିଟ୍ । ଏହି ପବିତ୍ର ମୁହୂର୍ତ୍ତରେ ମହାପ୍ରୟାଣ ହେଲା ଗୁରୁକୁଳ ଗୌରବ ମୋର ପରମଗୁରୁ ପ୍ରଫେସର ଶତ୍ରୁଘ୍ନ ନାଥଙ୍କର । ଉତ୍କଳର ଶିକ୍ଷାକାଶରୁ ଏକ ନକ୍ଷତ୍ର ଅପସରି ଗଲା । ବିଲୀନ ହୋଇଗଲା ଅମରାବତୀପୁରର ପରମ ସତ୍ତାରେ । କିନ୍ତୁ ଏଠାରେ ଆମ ପାଇଁ ରଖିଦେଇ ଗଲେ ଅନେକ ସ୍ମୃତି, ଅନେକ ଆଦର୍ଶ ଓ ଅନେକ ଅନୁଭବର ସ୍ୱାକ୍ଷର । ସେ ସ୍ମୃତି ଓ ଆଦର୍ଶ ଆମର ମୂଲ୍ୟବୋଧର ଭିତ୍ତିକୁ ସୁଦୃଢ଼ କରିବ, ଆମର ମଣିଷ ପଣିଆକୁ ଅନୁପ୍ରାଣିତ କରିବ, ଜାଗ୍ରତ କରିବ ଓ ଅଲୋକିତ କରିବ ।

ନିଜର ଜନ୍ମମାଟି ଭଦ୍ରକର ଉତ୍ତରବାହିନୀଠାରୁ ଓଡ଼ିଶାର ବିଭିନ୍ନ ସ୍ଥାନରେ, ବିଭିନ୍ନ ଶିକ୍ଷାନୁଷ୍ଠାନ, ଧର୍ମାନୁଷ୍ଠାନ ଓ ସାଂସ୍କୃତିକ ସମାରୋହରେ ସେ ନିଜର ଏକ ଜୀବନ୍ତ ଛବି ରଖିଯାଇଛନ୍ତି । ଜନମାନସରେ ତାଙ୍କର ପ୍ରତିଛବି ଆଙ୍କି ହୋଇଯାଏ ତାଙ୍କ କଥା ସ୍ମୃତି ମନକୁ ଆସିଗଲେ । ତାଙ୍କର ନୀତିବାଣୀ କର୍ଣ୍ଣରେ ମର୍ମରିତ ହୁଏ । ଜୀବନର ସବୁ ଦୁଃଖ, ସବୁ ଜଞ୍ଜାଳ ଅପସରିଯାଏ । ସାଙ୍ଗମାନଙ୍କ ଗହଣରେ ଯେତେବେଳେ ସେ ଦେବ ଦୁର୍ଲଭ ମଣିଷର କଥା ମନେପଡ଼େ, ଆମେ କହି ପକାଉ, 'ସତେ ଆଜି ଦିନଟି କେଡ଼େ ପବିତ୍ର ! ସାରଙ୍କ କଥା ଆଜି ମନେ ପଡ଼ିଲା, ଦିନଟି ଆନନ୍ଦରେ କଟିବ ।'

ଭାଗବତରେ କୁହାଯାଇଛି 'ମଣିଷ ଦେଖିଲେ ଦିବ୍ୟଜ୍ଞାନ, ଦେଖି ସନ୍ତୋଷ ଭଗବାନ ।'

ପ୍ରକୃତରେ କଥାଟି ସତ ! ସେଥିଲେ ଦିବ୍ୟ ଜ୍ଞାନଧାରୀ ମଣିଷ । ତାଙ୍କର ସାରସ୍ୱତ କୃତିଗୁଡ଼ିକୁ ପାଠ କଲେ ଏହା ସହଜରେ ଅନୁଭବ କରିହୁଏ । ମହିମା ଧର୍ମରେ ସେ ମହିମାନ୍ୱିତ । ମଣିଷ ପଣିଆରେ ସେ ଅନନ୍ୟ । ଶିକ୍ଷାଦାନ କ୍ଷେତ୍ରରେ ତାଙ୍କର ଶିକ୍ଷାପ୍ରଣାଳୀ ଛାତ୍ରମାନଙ୍କ ହୃଦୟକୁ ମୋହଚ୍ଛନ୍ନ କରେ । ଜ୍ଞାନର ପରିସରକୁ ପରିବ୍ୟାପ୍ତ କରେ । ଚିତ୍ତକୁ ପରିଶୁଦ୍ଧ ଓ ପରିପୁଷ୍ଟ କରେ ।

ତାଙ୍କର ରକ୍ତ, ମାଂଶ ଶରୀର ଆମଠାରୁ ଅପସରି ଯାଇଛି ସତ, କିନ୍ତୁ ତାଙ୍କର ଦିବ୍ୟତ୍ୱ ଆମ ମାନସ ରାଜ୍ୟକୁ ସଦାସର୍ବଦା ଆଲୋକିତ କରୁଥିବ । ସେ ଦେବ ଦୁର୍ଲଭ ମଣିଷ କେବେ ମରିପାରେନା । ସେ ମରଣ ଜୟୀ । ସେ କାଳଜୟୀ । ତାଙ୍କର ଦିବ୍ୟତ୍ୱ କାଳକାଳକୁ ଆଲୋକ ବର୍ତ୍ତିକା ସମ ଆଲୋକିତ କରୁଥିବ ।

୧୯୫୯ ମସିହାରେ ମୁଁ ଅନୁଗୁଳ ଟ୍ରେନିଂ କଲେଜରେ ତାଲିମ ନେଇଥିଲି । ସେଇ ଗୋଟିଏ ବର୍ଷ ତାଙ୍କଠାରୁ ଶିକ୍ଷାଦାନର ସୁଯୋଗ ପାଇ ଧନ୍ୟ ହୋଇଛି । ଖୁବ୍ ନିକଟରେ ବସି ତାଙ୍କ ପାଖରୁ ଜୀବନର ରହସ୍ୟ ବିଷୟରେ ଶୁଣିଛି । ଜୀବନଚର୍ଯ୍ୟାର ଶୃଙ୍ଖଳା ବିଷୟରେ ତାଙ୍କ ଜୀବନରୁ ଅନେକ କଥା ଅନୁଭବ କରିଛି । ଜୀବନସାରା ଏକ ଆଦର୍ଶ ଛାତ୍ର ଜୀବନର ଧାରା ସେ ଜାରି ରଖିଥିଲେ । ଶିକ୍ଷକତା ତାଙ୍କର ନିଶା ଥିଲା । ଜଣେ ଅତ୍ୟନ୍ତ ସ୍ନେହୀ, ଦରଦୀ ମଣିଷ ସେ । ଭାଷାରେ ଥିଲା ତାଙ୍କର ଯାଦୁକରୀ ସ୍ପର୍ଶ, ମୁଖମଣ୍ଡଳରେ ସଦା ଲାଖି ରହିଥିଲା । ଆପଣେଇ ନେବାର କୁହୁକ ହସ । ଅବାଟରୁ ବାଟକୁ ଆଣିବା ପନ୍ଥା ଥିଲା ତାଙ୍କର ସ୍ୱତନ୍ତ୍ର । ଭଲ କହିବା, ଭଲ କରିବା ଓ ଭଲ ଚିନ୍ତିବା ତାଙ୍କ ଜୀବନର ଥିଲା ଏକନିଷ୍ଠ ବ୍ରତ । ସେ ବର୍ଷକ ଭିତରେ କେତେବେଳେ ସେ ରାଗିବାର ମୁଁ ଶୁଣି ନାହିଁ ।

କଲେଜର ଅଧକ୍ଷ ହିସାବରେ କଲେଜର ନିୟମକାନୁନ୍ ମାନୁନଥିବା ଛାତ୍ରକୁ କିଭଳି ବଶକୁ ଆଣୁଥିଲେ- ସେ ସଂପର୍କରେ ଏକ ସୂଚନା ଦେଉଛି । ବେସିକ୍ ଟ୍ରେନିଂ କଲେଜରେ ନିୟମ ଥିଲା ପ୍ରତ୍ୟେକ ଛାତ୍ର ପାଳିକରି ପାଇଖାନା ସଫା କରିବା । ମୋର ଜଣେ ବନ୍ଧୁ ପାଇଖାନା ସଫା କରିବାକୁ ଅସମ୍ମତି ପ୍ରକାଶ କରି କଲେଜ ଛାଡ଼ି ଚାଲିଯିବାକୁ ଇଚ୍ଛାକଲା । ସେ କଥା ସାରଙ୍କ କାନକୁ ଗଲା । ବନ୍ଧୁଙ୍କଠାରୁ ସବୁକଥା ଶୁଣିଲେ । ହସିହସି କହିଲେ, "ଏ ସାମାନ୍ୟ କଥା ପାଇଁ ତମେ ପାଠପଢ଼ା ଛାଡ଼ିଦେବ ? ଆଚ୍ଛା, ତମକୁ ଆଉ ପାଇଖାନା ସଫା କରିବାକୁ ପଡ଼ିବ ନାହିଁ ।" ସେହି ଅନୁସାରେ ଛାତ୍ରାବାସର ମୁଖ୍ୟମନ୍ତ୍ରୀଙ୍କୁ ଗୋପନରେ ନିର୍ଦ୍ଦେଶ ଦେଲେ । ବନ୍ଧୁଜଣକ ଶାନ୍ତ ହେଲେ ଓ କଲେଜରେ ରହିଲେ । ଏହିଭଳି କିଛିଦିନ ଗଲା । ହଠାତ୍ ଦିନେ ବଡ଼ି ସକାଳୁ ସାର୍ ଛାତ୍ରାବାସର ଆସି ପହଞ୍ଚିଲେ । ପରିଧେୟ କାନ୍ଧରେ ଖଣ୍ଡେ ନାଲି ଗାମୁଛା । ସେହି ବନ୍ଧୁଙ୍କ ପାଖରେ ପହଞ୍ଚିଲେ । ବନ୍ଧୁ ସେତେବେଳେ ପାଠ ପଢୁଥିଲେ । ଖୁବ୍ ଖୁସି ହେଲେ । ପାଖରେ ବସିଲେ । ବହି ଖଣ୍ଡେ ନେଇ ପଢ଼ିଲେ । ଡାହାଣ ହାତକୁ ନିଜ ପେଟରେ ବୁଲାଉ ଥାଆନ୍ତି । ଆମେ ସବୁ ଅନେଇ ଥାଉ । ହଠାତ୍ କହିଲେ, 'ପେଟଟା କାହିଁକି ମୋଡ଼ିଦେଲା ?' ବାପା, ତମ ପାଇଖାନା କେଉଁଠି ? ବନ୍ଧୁ ଜଣକ ପାଇଖାନା ଆଡ଼କୁ ନେଇଗଲେ ଓ ପାଖରେ ଠିଆ ହେଲେ । ସାର୍ ପାଇଖାନା ଭିତରକୁ



ପଶିଯାଇ କହିଲେ, "ଏଠି ଏଡ଼େ ଦୁର୍ଗନ୍ଧ ! ଏତେ ଅସନା ! ଆଚ୍ଛା ବାପା, ପହଁରାଟା ଟିକେ ଦେଲ, ମୁଁ ପାଣି ଢାଳି ଟିକେ ସଫା କରିଦିଏଁ ।" ସାର୍ ପହଁରା ଧରିଲେ । ବନ୍ଧୁ ଜଣକ ଉପାୟ ନପାଇ ତାଙ୍କ ହାତରୁ ପହଁରା ଛଡ଼େଇ ନେଲେ ଓ ପାଣିଢ଼ାଳି ପାଇଖାନା ସଫାକଲେ । ତାପରେ ସବୁ ଠିକ୍ ଚାଲିଲା । ଏ ଥିଲା ଅମାନିଆ ପିଲାଙ୍କୁ ବାଟକୁ ଆଣିବାର ସ୍ୱତନ୍ତ୍ର ଶୈଳୀ । ଏହା କଲେଜ ଜୀବନର ଅନେକ ଅନୁଭୂତିରୁ ଗୋଟିଏ ।

ପରବର୍ତ୍ତୀ ଜୀବନରେ ୧୯୯୩ ମସିହା ଭିତରେ ତାଙ୍କ ସହିତ ମୋର ପାଞ୍ଚଥର ସାକ୍ଷାତ ହେବାର ସୁଯୋଗ ଆସିଛି । ୧୯୯୩ ମସିହା ମାର୍ଚ୍ଚ ୨୯ତାରିଖରୁ ୩୧ତାରିଖ ପର୍ଯ୍ୟନ୍ତ ନାରାୟଣ ଚନ୍ଦ୍ର ହାଇସ୍କୁଲରେ ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଲା । ପୁରାତନ ଛାତ୍ର ହିସାବରେ ସେ ଏଠାରେ ଦୁଇଦିନ ପାଇଁ ମୋର ଆତିଥ୍ୟ ଗ୍ରହଣ କରିଥିଲେ । ତାଙ୍କର ପଦାର୍ପଣରେ ଉତ୍ସବଟି ସର୍ବାଙ୍ଗ ସୁନ୍ଦର ହୋଇଥିଲା । ପୁରାତନ ଛାତ୍ର ମେଳରେ ସେ ନିଜକୁ ଭୁଲି ଯାଇଥିଲେ । ମୋର ପରମ ପୂଜ୍ୟ ଗୁରୁଙ୍କୁ ପାଇ ମୁଁ ନିଜେ ଧନ୍ୟ ହୋଇ ଯାଇଥିଲି । ଉତ୍ସବ ପରେ ବିଦାୟ ନେଲାବେଳେ ମୁଁ ସେଇ ୩୧ ତାରିଖରେ ଅବସର ନେଉଛି ବୋଲି ଜାଣି ଅବସର ସମୟ କିପରି କଟେଇବାକୁ ପଡ଼ିବ, ସେ ସଂପର୍କରେ ଅନେକ ମୂଲ୍ୟବାନ ଉପଦେଶ ଦେଇ ମୋତେ ଆଶୀର୍ବାଦ କରିଥିଲେ ।

ଆଜି ସେ ନାହାନ୍ତି । କିନ୍ତୁ ତାଙ୍କ ସେହି ଅଭୁଲା ଉପଦେଶ ଗୋଟିକ ପରେ ଗୋଟିଏ ମନରେ ପଡ଼ି ହୃଦୟକୁ ବିଗଳିତ କରୁଅଛି । ତାଙ୍କର ସେହି ଉପଦେଶର କିଛି ଯଦି ଜୀବନରେ କାର୍ଯ୍ୟରେ ଲଗାଏ, ତାହା ହେବ ମୋର ତାଙ୍କ ପ୍ରତି ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି । ତାଙ୍କର କରୁଣା ବିନା ଏହା ସମ୍ଭବ ନୁହେଁ । ପରମେଶ୍ୱରଙ୍କ ପଦରେ ପ୍ରାର୍ଥନା ଅମରଧାମରେ ତାଙ୍କର ଅମର ଆତ୍ମା ସୁଯୋଗ୍ୟ ସ୍ଥାନ ଲାଭ କରୁ । ତାଙ୍କ ଭଳି ଲୋକଙ୍କର ସଂଖ୍ୟା ଇହଧାମରେ ବଢ଼ୁ । ତାଙ୍କ ବିଚ୍ଛେଦ ସହିବା ପାଇଁ ତାଙ୍କ ପରିବାରବର୍ଗ ତଥା ଆମ ସମସ୍ତଙ୍କୁ ସାହସ ଓ ଶକ୍ତି ଦିଅନ୍ତୁ ।

**ଜଗନ୍ନାଥପୁର, ଭଦ୍ରକ**

# ଅଲିଭା ଦିପାଳୀ

**ଶ୍ରୀମତୀ କାନନବାଳା ପାଣୀ**

ହେ ପରମ ପୂଜନୀୟ ପିତୃଦେବ
ତବ ପୟରେ ଢାଳେ ଅଶ୍ରୁଳ ପ୍ରଣତି,
ସାଦରେ ତା' ଘେନ ।
ଜନ୍ମ ଲଭି ମାୟା ସଂସାରରେ
ପଞ୍ଚଭୂତେ ଗଢ଼ା ଥିଲା ଯେ ମରଣଶରୀର
ଷଡ଼ରିପୁ ପଞ୍ଚେନ୍ଦ୍ରିୟେ ନକରି ଖାତିର
ଶିକ୍ଷା ସମାଜର ସାହିତ୍ୟାକାଶରେ
ଧ୍ରୁବତାରା ସମ ବିଚ୍ଛୁରିତ କରିଗଲ
ନୂତନ ଆଲୋକ, ଆଉ
ନିଜ କର୍ମର ମହତ୍ତ୍ୱ କଲ ସମ୍ପାଦନ ।
ଶିକ୍ଷା-ଶିକ୍ଷକଙ୍କ ସର୍ବାଙ୍ଗୀନ ଉନ୍ନତି ସକାଶେ
ଉତ୍ସର୍ଗୀତ କରି ନିଜର ଜୀବନ
କରି କଠୋର ସାଧନା
ଶିକ୍ଷା ସାହିତ୍ୟର କରି ପ୍ରଭୂତ ଉନ୍ନତି
ରଚନା କରିଲ କେତେ ନୂଆନୂଆ ପୋଥି
ଲିପିବଦ୍ଧ କରିଗଲ
ଶିକ୍ଷା-ସାହିତ୍ୟ-ଦର୍ଶନରେ ଅସୁମାରୀ ଜ୍ଞାନ ।
ପ୍ରଜ୍ୱଳିତ ହୋଇ ତୁମ ଜ୍ଞାନର ଆଲୋକ
ସାହିତ୍ୟ ଓ ଶିକ୍ଷା ସମାଜର ଚଲାପଥେ ହୋଇଲା ପାଥେୟ
ଦିବାଲୋକେ ଧ୍ରୁବତାରା ଲୁଚିଗଲା ପରି
ଆଜି ତୁମେ ଉତ୍କଳ ଆକାଶୁ ହୋଇଗଲ ଅନ୍ତର୍ଦ୍ଧାନ ।
ଘୋଟିଗଲା ଅମା ଅନ୍ଧକାର ସେହି ଅମା କରିବାକୁ ଦୂର ।
ତୁମ ପରି ଆଉ କେହି ନ ଜନ୍ମିବେ ଏହି ଉତ୍କଳରେ
କରିବାକୁ ଆଲୋକ ପ୍ରଦାନ ।
ମହାଶୂନ୍ୟେ ତୁମେ ଲୀନ ହୋଇଗଲ
କରିଦେଇ ଧରାଧାମ ଶୂନ୍ୟ ।
ହେ ମହିମା ଧର୍ମର ପୃଷ୍ଠପୋଷକ
ତୁମ ବିରହରେ ଗୁମୁରିଗୁମୁରି ଆଜି ଉତ୍କଳଜନନୀ
ବିଳାପ କରୁଛି, କାହିଁ ଗଲା
ମୋ ରତନ ବୋଲି ।
ହେ ଯୋଗଜନ୍ମା ! ହେ ପ୍ରଜ୍ଞା-ପୁରୁଷ !! ମହାଯାତ୍ରା
ଆରମ୍ଭିଲ ଶୃଙ୍ଖଳିତ ମଧୁମୟ ମହାଶୂନ୍ୟ ପଥେ
ହତଭାଗ୍ୟେ ଆମେ ରହିଁଛୁ
ତୁମେ କିନ୍ତୁ ନିର୍ବିକାର ଚାଲିଗଲ ସଂସାରର ମାୟା ବନ୍ଧନ ଫେଇ;
ଚାଲିଗଲ ମହାଶୂନ୍ୟର ଅନନ୍ତ ସତ୍ତା ଭିତରକୁ
ପୁଣି କିନ୍ତୁ ରହିଗଲ ଆମ ଅନ୍ତରର ନିଭୃତ କୋଣରେ
ଏକ ଅଲିଭା ଦିପାଳୀ ହୋଇ ।

**ପୁରାତନ ଛାତ୍ରୀ**



# 'ଚରାଚର ହିତାୟ'ର ସାଧକ

ସଦାଶିବ ନାୟକ

କୁହାଯାଏ, 'ପିତାମାତା ସୁକୃତରୁ ପୁତ୍ର ହୁଏ ସୁଖୀ, ସୁପୁତ୍ର ହୋଇପାରିଲେ କୁଳଧର୍ମ ପାରେ ରଖି ।' ଏହି ଆପ୍ତବାକ୍ୟ ପୁରୁଣା ଗୁରୁ ସ୍ୱର୍ଗତ ଶତ୍ରୁଘ୍ନ ନାଥଙ୍କ ଜୀବନରୁ ଶିକ୍ଷା ମିଳିଥାଏ । ଛଅଜଣ ଭାଇ ଓ ଏକମାତ୍ର ଭଉଣୀର ଜନ୍ମଦାତ୍ରୀ ମା' ତାଙ୍କୁ ଅହରହ ଏହି ଶିକ୍ଷା ଦେଇଥାନ୍ତି ଯେ କର୍ତ୍ତବ୍ୟ କରିଚାଲ । ପିତାମାତାଙ୍କ ପ୍ରତି ଅଖଣ୍ଡ ଭକ୍ତି ରଖିଥାଅ । ଦୈନନ୍ଦିନ ଜୀବନରେ ଭାଇ ଭଉଣୀଙ୍କର ଅମାପ ସ୍ନେହ ଓ ଭକ୍ତି ତାଙ୍କ ଜୀବନ ଉପରେ ପ୍ରତିଫଳିତ ହୋଇଛି ଛତ୍ରେଛତ୍ରେ ।

ପରବର୍ତ୍ତୀ ଜୀବନରେ ନିଜେ ମହିମାଧର୍ମାଶ୍ରୟୀ ହୋଇ ଭୀମଭୋଇଙ୍କ 'ମୁକ୍ତି ଚିନ୍ତାମଣି' ବର୍ଣ୍ଣିତ 'ନିନ୍ଦା ଗର୍ବ ମାନ ନରଖିବାକୁ ଟାଣ, ଏକରେ ଲୟ ରଖିବ' କୁ ନିଜ ଜୀବନର ବ୍ରତ ଭାବେ ସେ ଗ୍ରହଣ କରିଛନ୍ତି । ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମି ଶେଷ ପର୍ଯ୍ୟନ୍ତ ସେ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରି ମହନୀୟ ଆଦର୍ଶ ପଛରେ ଧାବମାନ ହୋଇଛନ୍ତି ସିନା, ନିଜର ଶିକ୍ଷାଦୀକ୍ଷା, ପଦପଦବୀ, ପୁତ୍ରକନ୍ୟା ଓ ଛାତ୍ରଛାତ୍ରୀମାନଙ୍କର ଉତ୍ତମ ଚରିତ୍ରବତ୍ତା ପାଇଁ ଆସ୍ଫାଳନ ଦେଖାଇ ନାହାନ୍ତି । ବରଂ ଆହୁରି ଉନ୍ନତମାନର ଜୀବନଯାପନ କରି ସମସ୍ତଙ୍କର ପ୍ରିୟପାତ୍ର ହେବାକୁ ଅତି କୋମଳ ଭାଷାରେ ଓ ଭାବରେ ସମସ୍ତଙ୍କୁ ପରାମର୍ଶ ଦେଇ ଚାଲିଛନ୍ତି । ତାଙ୍କର ବ୍ୟାପକ ଜୀବନ ଆଲୋଚନା କରିବାର ପରିସର ଏଠାରେ ସୀମିତ । ତାଙ୍କ ଜୀବନର ମହତର ସମାଜ ପାଇଁ କିପରି ଶିକ୍ଷଣୀୟ ଓ ଅନୁସରଣୀୟ ତାହାହିଁ ଆମର ଧ୍ୟେୟ । ଜନୈକ ଛାତ୍ର ହିସାବରେ କାଳେ ଅକାଳେ ନାଥ ସାହେବଙ୍କ କଥା ପଡ଼ିଲେ ଆମେ କିପରି ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନ ବିତାଉଛୁଁ କହି ଛାତି କୁଣ୍ଢେମୋଟ କରିଛୁଁ ।

୧୯୬୦-୬୧ ମସିହାର କଥା । ଭଦ୍ରକରୁ ଆମେ ୮-୧୦ଜଣ ଅନୁଗୁଳର ସରକାରୀ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ବଛାବଛି ପରୀକ୍ଷାରେ କୃତକାର୍ଯ୍ୟ ହୋଇ ନାମ ଲେଖାଇ ସାରିବା ପରେ କଟକରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ନାମ ଲେଖାଇବା ପାଇଁ ଅନୁମତି ପତ୍ର ପାଇଲେ ମଧ୍ୟ ଯେଉଁ ବ୍ୟକ୍ତି ଜଣକର ଚୁମ୍ବକୀୟ ବ୍ୟକ୍ତିତ୍ୱର ଆକର୍ଷଣ ଆମ୍ଭମାନଙ୍କୁ ଟାଣି ରଖିଥିଲା, ସେ ହେଉଛନ୍ତି ପୂଜ୍ୟ ଗୁରୁ ଶତ୍ରୁଘ୍ନ ନାଥ । ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ପରେ ମଧ୍ୟ ଶାନ୍ତିନିକେତନରେ ବୈଶିଷ୍ଟ୍ୟ ଯେପରି ଅଦ୍ୟାବଧି ନିର୍ଘୋଷିତ, ଅନୁଗୁଳର ସେ ପ୍ରଶିକ୍ଷଣ ମହାବିଦ୍ୟାଳୟର ଶୈକ୍ଷିକ ପରିବେଶ ଆଜି ବି ସ୍ପଷ୍ଟ ବାରିହୋଇ ପଡ଼େ ଯଦିଓ ନାଥ ସାହେବ ସେଠାରୁ ବହୁଦିନ ହେଲା ବିଦାୟ ନେଇ ସାରିଛନ୍ତି । ଏହି ପରମ୍ପରାର ଦାୟାଦ ସତ୍ୟବାଦୀ ଯୁଗରେ ଜାତୀୟତାବାଦୀ ଶିକ୍ଷକଗୋଷ୍ଠୀ ଗଠନ ପରି ମୌଳିକ ଶିକ୍ଷକର ପ୍ରତିନିଧିତ୍ୱ କରନ୍ତି । ଶିକ୍ଷକ ଜୀବନର ପ୍ରାରମ୍ଭରେ ପୁରୁଣାବଜାରସ୍ଥ ନାରାୟଣ ଚନ୍ଦ୍ର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ୧୯୭୧ରୁ ୧୯୭୭ ପର୍ଯ୍ୟନ୍ତ କାର୍ଯ୍ୟରତ ଥାଏ । ନାଥ ସାହେବ ନିଜର ଭିଟାମାଟି ଉତ୍ତରବାହିନୀ ଯିବା ବାଟରେ ମୋ ବାଟେ ଯାଆନ୍ତି । ସୁଖଦୁଃଖ ଦିପଦ ହୁଅନ୍ତି । କାହ୍ନୁଚରଣ ବାଳିକା (ଅଧୁନା ସହଶିକ୍ଷାନୁଷ୍ଠାନ) ଉଚ୍ଚବିଦ୍ୟାଳୟରେ ଗୋଟିଏ ଗଣ୍ଡଗୋଳ ସମାଧାନ କରାଇବାକୁ ସେ ଆସିଥାନ୍ତି । ମୋତେ ନିର୍ଦ୍ଦେଶ ହେଲା, ସେଦିନ ସେଠାରେ ରହି ତାଙ୍କ ସହିତ ନ୍ୟାୟରେ ଯୋଗ ଦେବାକୁ । ସମାଧାନର ସୂତ୍ର ହଠାତ୍ ଯେପରି ଭଗବାନ ମୋ ମୁହଁରେ ତାଙ୍କର ଭାବନା ପ୍ରକାଶ କରାଇ ଦେଲେ । ହଠାତ୍ ଏହା ଗ୍ରହଣୀୟ ହେଉଛି କି ନାହିଁ ସମସ୍ତଙ୍କୁ ପଚାରିଦେଲେ । ମୋତେ କିନ୍ତୁ ଭାରି ଡର ଲାଗୁଥାଏ । କାରଣ ତାଙ୍କଭଳି ସର୍ବମାନ୍ୟ ମୁରବୀ ଥାଉଁ ଥାଉଁ ମୁଁ କାହିଁକି ଓ କିପରି ବା ଏ ଦୁଃସାହସ କଲି । ଅବଶେଷରେ ମୋର ସୈଦ୍ଧାନ୍ତିକ ବିଚାରଧାରା ଗୃହୀତ ହୋଇଯାଇ ସମସ୍ୟାର ଆଶୁ ସମାଧାନର ପଥ ଉନ୍ମୁକ୍ତ ହୋଇଗଲା । ସେଦିନର ଗୁରୁଦେବଙ୍କର ଆଶୀର୍ବାଦ ପରବର୍ତ୍ତୀ ଅଧ୍ୟାୟରେ ଶିକ୍ଷାମଣ୍ଡଳାଧୀଶ ଭାବରେ ବହୁ ପରିଚାଳନା ସମିତି ଓ ଶିକ୍ଷକ ଗୋଷ୍ଠୀଙ୍କ ମଧ୍ୟରେ ଉପୁଜୁଥିବା ବିବାଦୀୟ ସମସ୍ୟାର ସମାଧାନ କରିବା ବେଳେ ମୋର ମନେପଡ଼େ ସେ ଦିନର ଆଶିର୍ବଚନ । ଏହା ଦ୍ୱାରା କ୍ରମେ ମନୋବଳ ଦୃଢ଼ ହୋଇଛି ଓ ଭୟ କ୍ରମେ ଅପସରି ଯାଇଛି କର୍ମକ୍ଷେତ୍ରରୁ । ସେ ତ ଜଣେ ବ୍ୟକ୍ତି ନଥିଲେ । ବରଂ ବ୍ୟକ୍ତି ଭାବରେ ଥିଲେ ଏକ ବହୁମୁଖୀ ଅନୁଷ୍ଠାନ । ଯିଏ ବରଗଛ ଭଳି ବହୁ କ୍ଳାନ୍ତଶ୍ରାନ୍ତ ଜ୍ଞାନମୟୀ ପଥିକଙ୍କୁ ନିଜର ସ୍ୱଭାବ ସୁଲଭ ଢଙ୍ଗରେ ନିରାମୟ ଆଶ୍ରୟ ପ୍ରଦାନ କରି ଧନ୍ୟ କରିଛନ୍ତି ତାଙ୍କର ଅଗଣିତ ସ୍ତାବକଙ୍କୁ ।



୧୯୪୪ ତାଙ୍କ ଦ୍ୱାରା ରଚିତ 'ବିଶ୍ୱ ଓ ବ୍ୟକ୍ତି' ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ପୁରସ୍କୃତ ହେବାବେଳେ ଆମେ ଆନନ୍ଦିତ ହୋଇଥିଲୁ । କିନ୍ତୁ ଶେଷବେଳେ ୨୦୦୩ରେ ପ୍ରକାଶିତ ତାଙ୍କର ଆତ୍ମଜୀବନୀ 'ଚରାଚର ହିତାୟ' ଆମକୁ ଚମତ୍କୃତ କରିଛି । ପ୍ରାୟ ଅର୍ଦ୍ଧଶତକ ପୁସ୍ତକର ରଚୟିତା ଓ ଅସଂଖ୍ୟ ପ୍ରବନ୍ଧ ତଥା ଭାଷଣର ଉଦ୍‌ଗାତା ଏହି ଶତାୟୁ ପ୍ରାୟ ବ୍ୟକ୍ତି ଓଡ଼ିଶାର ଶିକ୍ଷା ଓ ସାହିତ୍ୟ ଜଗତରେ ଏକ ବିରଳ ପ୍ରତିଭା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶିକ୍ଷକରୁ ଉନ୍ନିତ ଶିକ୍ଷାକ୍ଷେତ୍ରରେ ପଦାଧିକାରୀ କବି ନନ୍ଦ କିଶୋର ବଳ, ମଧୁସୂଦନ ରାଓ, ରାଧାନାଥ ରାୟ, ଫକୀରମୋହନ ସେନାପତି, ଚନ୍ଦ୍ରମୋହନ ମହାରଣା ଭଳି । ଶେଷାର୍ଦ୍ଧରେ ପ୍ରଫେସର ନାଥ ଜଣେ ଦିଗବାରେଣି । ଶିକ୍ଷା, ଶିକ୍ଷକ, ଶିକ୍ଷାୟତନକୁ ଦିଗ୍‌ଦର୍ଶନ ଦେଇ ଚାଲିଛନ୍ତି ୨୦୦୬ ମାର୍ଚ୍ଚ ୧୦ ତାରିଖ ପର୍ଯ୍ୟନ୍ତ । ମୌଳିକ ଶିକ୍ଷାର ଅନାଲୋଚିତ ଦିଗକୁ ସେ ଆଲୋକକୁ ଆଣିଛନ୍ତି । ଗାନ୍ଧିଜୀଙ୍କର ସମାଜିକ ପୁନର୍ଗଠନରେ ସେ ନିଜକୁ ହଜାଇ ଦେଇଛନ୍ତି ଶିକ୍ଷାର ପୁର୍ନବିନ୍ୟାସ କରିବାରେ । ଅହମିକାଶୂନ୍ୟ ଜୀବନଯାପନ କରି ଅନ୍ୟମାନଙ୍କୁ ସାଙ୍ଗରେ ନେଇ ସମାଜିକ ଓ ଶୈକ୍ଷିକ କାର୍ଯ୍ୟରେ ବ୍ୟସ୍ତ ରହିବାକୁ କେବଳ ଉଚ୍ଚାରଣ ନୁହେଁ ଆଚରଣରେ ମଧ ପଥ ପରଦର୍ଶନ କରିଚାଲିଛନ୍ତି ।

ଜୀବନ ସଂଗ୍ରାମରେ ଯେତେ ବିପଦ ଆସୁ ପଛେ ସେ ସବୁକୁ ଭୃକ୍ଷେପ ନକି ବିବେକାନନ୍ଦଙ୍କ ଜୀବନଦର୍ଶନ 'They live, who live for others, the rest are more dead than alive.' କଥା ଆମ ସ୍ମରଣକୁ ଆଣିଛନ୍ତି ପ୍ରତି ପଦରେ । ଯଥାର୍ଥରେ କାୟ ମନୋବାକ୍ୟରେ ସେ ଥିଲେ ମହିମାଧର୍ମ ଓ ନିଷ୍କାମ କର୍ମରେ ବିଶ୍ୱାସୀ । ଭୀମଭୋଇଙ୍କର 'ଅଦୃଶ୍ୟ ପଥ ସେ ପୁର, ନିଷ୍କାମରେ ଅନୁସର' ତାଙ୍କ ଜୀବନର ପଥ ଓ ବ୍ରତ । କିଏ କେଉଁ ଧର୍ମରେ ବିଶ୍ୱାସୀ ଥିଲେ ତାହା ଏଠାରେ ବିଚାର୍ଯ୍ୟ ନୁହେଁ । କିନ୍ତୁ ସବୁ ଧର୍ମର ନିର୍ଯ୍ୟାସ 'କର୍ମଣେ ବ୍ୟାଧିକାରସ୍ତୁ ମା ଫଳେଷୁ କଦାଚନ' ତାଙ୍କ ଜୀବନରୁ ଶିକ୍ଷାମିଳେ । ଭାଗବତ ପଦ 'କର୍ମ ମୋହର ନିଜଗୁରୁ, ଉଦ୍ଧବ କେତେ ତୁ ପଚାରୁ' ହେଉ ବା 'କର୍ମେ ପ୍ରାପତ ନରହରି'ର ଶିକ୍ଷକଗୋଷ୍ଠୀ ଏତିକି ଶିଖିଲେ ସମାଜର ପ୍ରଭୂତ ଉପକାର ସାଧିତ ହେବ, ନିଃସନ୍ଦେହ ।

ସମାଜର କେଉଁ ବର୍ଗଙ୍କ ପ୍ରତି ତାଙ୍କର ଲେଖନୀମୁନ ଦିଗ୍‌ଦର୍ଶନ ଦେବାରେ କାର୍ପଣ୍ୟ କରିଛି, କହି ହେବ ନାହିଁ । ପିଲାଙ୍କ ବ୍ରହ୍ମଜ୍ଞାନ ଶିକ୍ଷାଠାରୁ ଶିକ୍ଷକ ସହାୟକ ପ୍ରବନ୍ଧ, ଜଗତରେ ଭାରତ, ଆମ ଯୁଗ କଥାର ତିନିଟିଯାକ ଭାଗ, ବିଶ୍ୱବନ୍ଧୁ, ଆମ ଭାଷା ବିଭବ, The Dictionary, English-Oriya-English, ଭକ୍ତିକବି ଭୀମଭୋଇ ଓ ମହିମାଧର୍ମ ପ୍ରଭୃତି ତାଙ୍କ ରଚନାର ପ୍ରତିନିଧିତ୍ୱ କରେ । ସମ୍ବର୍ଦ୍ଧନା ଓ ପୁରସ୍କାର ସୁପୁରୁଷଙ୍କୁ ସମ୍ମାନିତ କରିବା ସହିତ ଅନ୍ୟ ଉଦ୍ୟମୀ ସାହିତ୍ୟିକଙ୍କୁ ଉଦ୍‌ବୁଦ୍ଧ ଓ ପ୍ରେରିତ କରେ ଅଧିକ ଉପାଦେୟ ଲେଖା ଲେଖିବା ପାଇଁ । ପ୍ରଜାତନ୍ତର ବିଷୁବ ମିଳନ ହେଉ ବା ଭଦ୍ରକ ପୂଜ୍ୟପୂଜା ସଂସଦର ଦଶହରା ମିଳନରେ ସମ୍ବର୍ଦ୍ଧିତ ହେବାଠାରୁ ବହୁ ଅନୁଷ୍ଠାନ ତାଙ୍କୁ ସମ୍ବର୍ଦ୍ଧିତ କରି ଧନ୍ୟ ହୋଇଛି । ପ୍ରାକୃତିକ ଚିକିତ୍ସାରେ ରହି ନିରାମିଷ ଭୋଜନରେ ସେ ଜୀବନ ବିତାଉଥିଲେ । ଆଜିର କ୍ଲିଷ୍ଟ, ପୂତିଗନ୍ଧମୟ ଜୀବନଯାପନକୁ ସେ ସର୍ବାନ୍ତକରଣରେ ଭର୍ତ୍ସନା କରିଛନ୍ତି । କେବଳ 'ସ୍ନେହର ସୂତ୍ର ସୂତା ନୁହେଁ, ଏହା ମତ୍ତହସ୍ତୀକୁ ଆୟତ୍ତ କରିପାରେ । ସତ୍ୟ, ଅହିଂସା ପରି ସ୍ନେହ ଚିରନ୍ତନ ତାଙ୍କ ଜୀବନରୁ ଶିକ୍ଷା ମିଳିଥାଏ । ନିଜର ଜନ୍ମଭୂମି ଭଦ୍ରକରେ ଯେଉଁ ମହାବିଦ୍ୟାଳୟ ଝଡ଼ ସୃଷ୍ଟିହୋଇ ଇତସ୍ତତ କରିପକାଇଥିଲା ତାକୁ ସେ ଅଧକ୍ଷ ଭାବରେ ସଜାଡ଼ିଦେଇ ଭଦ୍ରକବାସୀଙ୍କୁ ଅନୁଗୃହୀତ କରିଛନ୍ତି ।

ଜୀବନ ଓ ଜୀବିକାର ସ୍ୱାଦୁ ନିଜେ ଚାଖି ତାଙ୍କର ଶତଶତ ପ୍ରଶଂସକ, ଛାତ୍ରାଛାତ୍ରୀ ଓ ସ୍ତାବକ ତଥା ଓଡ଼ିଶାବାସୀଙ୍କୁ ମୁଗ୍ଧ ଚକିତକରି କର୍ମଯୋଗର ମହକ ବାଣ୍ଟି ଚାଲିଥିଲେ । ସେ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ଆତ୍ମା ଘୂରି ବୁଲୁଛି । କର୍ମ କରିବାର ଆନନ୍ଦ କେବଳ ତାଙ୍କଠାରେ ଆଶା କରାଯାଏ । ଗାନ୍ଧିଜୀଙ୍କର ମୃତ୍ୟୁ ସହିତ ଗାନ୍ଧିବାଦର ବିଲୋପ ସାଧିତ ହୋଇସାରିଛି ବୋଲି ଯେଉଁମାନେ ସମାଲୋଚନାର ଶତମୁଖ, ସ୍ୱର୍ଗତ ନାଥଙ୍କର ଜୀବନଚର୍ଯ୍ୟା ତାଙ୍କ ପାଇଁ ବୁମେରାଂ ହୋଇପାରିବ । ଛାତ୍ରାବସ୍ଥାରେ ଧୋତି ଓ ହାଫ୍‌ସାର୍ଟ ପିନ୍ଧା ଯୁବକ ବିଲାତରେ ପରିସ୍ଥିତିର ଚାପରେ ପ୍ୟାଣ୍ଟକୋର୍ଟ ଓ ଟାଇ ପିନ୍ଧିଲେ ବି ସେଠାରୁ ଫେରି ଉଚ୍ଚ ପଦାରୂଢ଼ ହେଲେ ହେଁ ସେହି ଖଦଡ଼ ଧୋତି ଓ ପଞ୍ଜାବୀ ଆପଣେଇ ନେଇ ଆମକୁ ଶିକ୍ଷା ଦେଇଛନ୍ତି ଯେ ଉଚ୍ଚ ଚିନ୍ତା କେବେ ଉଚ୍ଚବଂଶ ବା ବେଶ ପୋଷାକରେ ସୀମିତ ନଥାଏ । ବରଂ ଶାସ୍ତ୍ରବାଣୀ 'ଦେବାଧୀନ ମମ ଜନ୍ମ, ମମାଧୀନ ଚ କର୍ମାଣି'ର ଅମର ବାଣୀ ନିଜର ଜୀବନଶୈଳିରେ ପ୍ରତିପାଦିତ କରିଗଲେ ।

ଆଜି ତାଙ୍କର ଅବର୍ତ୍ତମାନରେ ସାରା ରାଜ୍ୟ ଦୁଃଖରେ ମ୍ରିୟମାଣ ହୋଇ ଉଠୁଥିବାବେଳେ ପରପିଢ଼ି ପାଇଁ ତାଙ୍କର ବାର୍ତ୍ତା ସମାଜର କୋଣେ ଅନୁକୋଣେ ପ୍ରତିଧ୍ୱନିତ ହେଉ- ଏହାହିଁ କାମନା ।

**ପ୍ରାକ୍ତନ ଶିକ୍ଷାମଣ୍ଡଳାଧୀଶ, ଭଦ୍ରକ**



# ଏକ ସ୍ୱର୍ଣ୍ଣିମ ଯୁଗର ଅବସାନ

**ପ୍ରଫେସର ଜଗନ୍ନାଥ ମହାନ୍ତି**

ଶିକ୍ଷାକ୍ଷେତ୍ରର ଭୀଷ୍ମ ପିତାମହ ପ୍ରଫେସର ଶତ୍ରୁଘ୍ନ ନାଥ ଚାଲିଗଲେ । ଯେଉଁ ବ୍ୟକ୍ତି ଦୀର୍ଘ ୬୦ ବର୍ଷ ଧରି ଅକ୍ଳାନ୍ତ ପରିଶ୍ରମ କରିଥିଲେ, ସେ ଯେମିତି ବିଗତ ଦୁଇତିନି ବର୍ଷ ଶରଶଯ୍ୟାରେ ବିଶ୍ରାମ ନେଇଥିଲେ । ମୋଟ ୯୧ ବର୍ଷରୁ ଉର୍ଦ୍ଧ୍ୱ କାଳର ଜୀବନଟି ମାର୍ଚ୍ଚ ୧୦ତାରିଖ (୨୦୦୬) ରାତ୍ରି ୧୧ଟା ସମୟରେ ଯେମିତି ଇଚ୍ଛା ମୃତ୍ୟୁବରଣ କଲେ । ଶେଷ ଜୀବନର ସ୍ୱଳ୍ପ କାଳରେ ସେ ଯେଉଁ ବିଶ୍ରାମ ନେଇଥିଲେ ସେତେବେଳେ ସେ ଜଞ୍ଜାଳମୟ ସଂସାରକୁ କ୍ରମେ ବିସ୍ମୃତ ହେଉଥିଲେ । ଏହି ସମୟରେ ସେ ଯେମିତି ଦୀର୍ଘ ଯାତ୍ରା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ, ନୂତନ ଶକ୍ତି ସଂଗ୍ରହ କରୁଥିଲେ । ଏବେ ସେ ଧରାଧାମରୁ ବିଦାୟ ନେଇ ସ୍ୱର୍ଗୀୟ ମୁକ୍ତି ଓ ଶାନ୍ତିର ସନ୍ଧାନରେ ଆମଠାରୁ ଅପସରି ଗଲେ । ସେ ଥିଲେ ମହାମାନବ, ଏକ ପୂର୍ଣ୍ଣାଙ୍ଗ ଜୀବନ ନିର୍ବାହ କରିଥିଲେ ସେ । ବହୁ ଜୀବନକୁ ପ୍ରଭାବିତ କରିବାରେ, ଚରିତ୍ର ତଥା ଆଚରଣକୁ ଗଠିତ କରିବାରେ, ସର୍ବୋପରି ଅସଂଖ୍ୟ ଜୀବନ ଦୀପକୁ ଆଲୋକିତ କରିବାରେ ସେ ଥିଲେ ସିଦ୍ଧହସ୍ତ । ସେ ଥିଲେ ଅବିସ୍ମରଣୀୟ, ଚିରଦୀପ୍ତିମାନ ।

ପ୍ରଫେସର ନାଥଙ୍କ ଜୀବନ ଥିଲା ସଂଘର୍ଷମୟ । ଗ୍ରାମ ବିଦ୍ୟାଳୟରୁ ବାଲ୍ୟ ଶିକ୍ଷା ସମାପ୍ତ କରି ସେ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ସୁଦକ୍ଷ ଶିକ୍ଷକ ଗୋକୁଳାନନ୍ଦ ନାୟକ ଥିଲେ ତାଙ୍କର ପ୍ରଧାନ ଶିକ୍ଷକ । ଯାହାଙ୍କର ଜୀବନ ଓ ଜୀବିକାର ବ୍ରତ ଥିଲା 'ମନୁଷ୍ୟ ଗଠନ' (Man making mission) । ତାପରେ ସେ କଟକ ରେଭେନ୍‌ସା କଲେଜକୁ ଗଲେ । ବିଶିଷ୍ଟ ଶିକ୍ଷାବିତ୍ ଓ ବୈଜ୍ଞାନିକ ଡ. ପ୍ରାଣକୃଷ୍ଣ ପରିଜା ତାଙ୍କୁ ବ୍ୟକ୍ତିଗତ ଚରିତ୍ର ପ୍ରମାଣ ପତ୍ର ଦେଇ ଲେଖିଥିଲେ, 'ରାୟ ସାହେବ ଯଦୁନାଥ ମହାପାତ୍ର ଶ୍ରୀମାନ ଶତ୍ରୁଘ୍ନଙ୍କୁ ଦରିଦ୍ର ଅଥଚ ମେଧାବୀ ଛାତ୍ର ଭାବରେ ମୋତେ ଚିହ୍ନାଇ ଥିଲେ । ବାସ୍ତବିକ ତାଙ୍କର ଉଭୟ କଥା ସତ ।' ସେ ତେଣୁ କଲେଜରୁ ଛାତ୍ରବୃତ୍ତି ଲାଭ କରିଥିଲେ । ପରବର୍ତ୍ତୀକାଳରେ ସେ ହାଇସ୍କୁଲ ଓ ଶିକ୍ଷକ ପ୍ରଶିକ୍ଷଣ କ୍ଷେତ୍ରରେ ବହୁ ସ୍ୱନାମଧନ୍ୟ ଶିକ୍ଷକ ଓ ପରିଦର୍ଶକଙ୍କ ସଂପର୍କରେ ଆସିଥିଲେ । ମେଧାବୀ ଶିକ୍ଷକ ଭାବରେ ମନୋନୀତ ହୋଇ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଶିକ୍ଷାରେ ଏମ୍.ଏ. ଅଧ୍ୟୟନ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଜୀବନ ଦର୍ଶନରେ ସେ ଗଭୀର ଭାବରେ ପ୍ରଭାବିତ ହୋଇ ତାଙ୍କର ଉଚ୍ଚ ମୂଲ୍ୟବୋଧକୁ କାର୍ଯ୍ୟରେ ପରିଣତ କରିଥିଲେ । ପରେ ସେ ମହିମାଧର୍ମର ଶୂନ୍ୟବାଦ ଓ ମାନବିକ ମୂଲ୍ୟବୋଧରେ ଅନୁପ୍ରାଣିତ ହୋଇଥିଲେ ।

ସେ ଥିଲେ ଏକାଧାରାରେ ଜଣେ ମାନବବାଦୀ ଶିକ୍ଷକ, ସାହିତ୍ୟିକ ଓ ଗବେଷକ । ମାନବିକ ଚେତନା- ସ୍ନେହ, ସୌହାର୍ଦ୍ଦ୍ୟ, ସହାନୁଭୂତି ଓ ସମ୍ବେଦନା ତାଙ୍କ ଜୀବନ ଓ ଆଚରଣରେ ପ୍ରତିଫଳିତ ହୋଇଥିଲା । ଭୀମ ଭୋଇଙ୍କ ଅମରବାଣୀ ଥିଲା ତାଙ୍କ ଜୀବନର ମୂଳମନ୍ତ୍ର ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ପ୍ରଫେସର ନାଥଙ୍କର ଶିକ୍ଷାଦାନ ଓ ଆଲୋଚନା ଥିଲା ଅତି ସରସ, ସାର୍ଥକ ଓ ସାବଲୀଳ । ରାଜ୍ୟ ଶିକ୍ଷା ପ୍ରତିଷ୍ଠାନରେ ସେ ଅଧକ୍ଷ ଥିଲାବେଳେ ବହୁ ପ୍ରବୀଣ ଓ ନବୀନ ଶିକ୍ଷକ ଓ ପରିଦର୍ଶକମାନଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ବିଚାର ବିମର୍ଶ କଲାବେଳେ ତାଙ୍କର ଚିନ୍ତାଧାରା ଥିଲା ଅତି ସ୍ପଷ୍ଟ, ସଂଯତ ଓ ପ୍ରଭାବଶାଳୀ । ବିଭିନ୍ନ ସଭାସମିତି ଆୟୋଜନରେ ସେ ଥିଲେ ଅତି ପୁଙ୍ଖାନୁପୁଙ୍ଖ ଓ ତାଙ୍କର ସଂଗଠନ ଥିଲା ଆଦର୍ଶ ଓ ଅନୁକରଣୀୟ । ତାଙ୍କର ଗଭୀର ନିଷ୍ଠା ଓ ଆନ୍ତରିକତାରେ ଆମେ ଖୁବ୍ ପ୍ରଭାବିତ ହୋଇଥିଲୁ । ପ୍ରତ୍ୟେକ କ୍ଷେତ୍ରରେ ସେ ଚୂଡ଼ାନ୍ତ ନିଷ୍ପତ୍ତି ନିଜେ ନେଉଥିଲେ ହେଁ ଆମମାନଙ୍କ ସହ ସମୂହ ଆଲୋଚନା କରୁଥିଲେ ଏବଂ ଦାୟିତ୍ୱ ବାଣ୍ଟିଦେଉଥିଲେ ।

ଶିକ୍ଷା କ୍ଷେତ୍ରରେ ସେ ଥିଲେ ପ୍ରବାଦ ପୁରୁଷ । ସାହିତ୍ୟର ବହୁ ବିଭାଗରେ ତାଙ୍କର ଅନୁପମ ଅବଦାନ ଅନସ୍ୱୀକାର୍ଯ୍ୟ । ସେଥିଯୋଗୁଁ ସେ ରାଜ୍ୟର ସବୁ ସାରସ୍ୱତ ଓ ଶିକ୍ଷା ସଂସ୍ଥା ଦ୍ୱାରା ସମ୍ମାନିତ ଓ ସମ୍ବର୍ଦ୍ଧିତ ହୋଇଥିଲେ । ୪ ବର୍ଷ ପୂର୍ବେ ସାରଙ୍କ ପତ୍ନୀ ଇହଧାମ ତ୍ୟାଗ କରିଥିଲେ ହେଁ ପୁତ୍ର ବଧୂ ଗୀତାଙ୍କର ସସ୍ନେହ ସେବା ଯତ୍ନରେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ । ଆମେ ସମସ୍ତେ ଏଥିରେ ଅଭିଭୂତ ହୋଇଥିଲୁ । ସାରଙ୍କ ଅତିମାନବୀୟ ବ୍ୟକ୍ତିତ୍ୱ ଚିର ଅନିର୍ବାଣ ଅଲୋକସ୍ତମ୍ଭ ପରି ସର୍ବଦା ଆମକୁ ଆଶୀଷ ଓ ଆଲୋକ ଦେଉ ଏତିକ ଆମର ପ୍ରାର୍ଥନା ।

୨୯୩୫, ଗୌରୀନଗର, ଭୁବନେଶ୍ୱର- ୨



# ମଣିଷ ନୁହେଁ ସେ ଦେବତା

ଶ୍ରୀ ସୁରେନ୍ଦ୍ର ପ୍ରସାଦ ରାଉତ

ଗୁରୁଜୀ ସ୍ୱର୍ଗରୁ ଆଜ ମୋର ପ୍ରଣାମ ଗ୍ରହଣ କରିବେ ।

ଗୁରୁଜୀ ଆଜି ଆପଣଙ୍କ ପାଇଁ ଲେଖିବାକୁ ହାତ ଥରୁଛି । ଆଖିରୁ ପାଣି ଗଡୁଛି । ଏ ଗାଁ କାହିଁକି ଏ ଅଞ୍ଚଳକୁ ଆପଣ ଧନ୍ୟ କରିଛନ୍ତି । ଗାଁ ମାଟି କାନ୍ଦୁଛି । ଆପଣଙ୍କ ଗୁଣକୁ ମାପିବା ମୋ ଯୋଗ୍ୟତାର ବାହାରେ । ହତଭାଗ୍ୟ ମୁଁ । ଆଜୀବନ ଆପଣଙ୍କ ସ୍ନେହ ଡୋରିରେ ବନ୍ଧା ହୋଇ ମଧ ଶେଷ ଦର୍ଶନରୁ ବଞ୍ଚିତ ହେଲି ।

ଆପଣଙ୍କ ବହୁମୁଖୀ ପ୍ରତିଭାକୁ ବର୍ଣ୍ଣନା କରିବା ସମ୍ଭବ ନୁହେଁ । କେତୋଟି ଘଟଣା ମନେ ପଡୁଛି, ତାକୁ ହିଁ ଲେଖୁଛି ।

କାହାଣୀ ପରି ଲାଗୁଛି । ମୋ ବାପାଙ୍କଠାରୁ ପିଲାଦିନେ ଶୁଣିଛି । କାରଣ ସେ ଥିଲେ ଆପଣଙ୍କ ସମସାମୟିକ । ଆମ ଗାଁ ତଥା ଆଖପାଖ ଗାଁରୁ ହାତ ଗଣତି କେତେକ ପିଲା ସେ ସମୟରେ ଋଲିଋଲି ନାରାୟଣ ଚନ୍ଦ୍ର ମ.ଇ. ସ୍କୁଲକୁ ଯାଉଥିଲେ । ଆପଣ ବି ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ଅନ୍ୟ ପିଲାମାନଙ୍କ ବାପାମାନେ ଆପଣଙ୍କ ଜାତିକୁ ଆକ୍ଷେପ କରି କଡ଼ା ମନ୍ତବ୍ୟ ଦିଅନ୍ତି । ଯଦି ପାଠ ପଢ଼ିବ ଆମପୁଅ । ସତୁରା ଯଦି ପାଠ ପଢ଼ିବ କେନ୍ଦରା ବଜାଇବା କିଏ ? ସେଥିପ୍ରତି ଆପଣ କାନ ଦିଅନ୍ତି ନାହିଁ । ରାସ୍ତାଘାଟ ନଥିଲା ଆଣ୍ଠୁଲୁଚା ଗାମୁଛା ଖଣ୍ଡେ ପିନ୍ଧି, ମୁଣ୍ଡରେ ଓଦା ଗାମୁଛା ପକାଇ ଖାଲି ଗୋଡ଼ରେ ଝାଞ୍ଜି ଖରାରେ ସାଥିପିଲାଙ୍କ ଘରକୁ ଯାଉଥିଲେ । ମାଇଲ ମାଇଲ ବାଟ ବହିଖଣ୍ଡେ ପାଇଁ । ନିଜର ବହି କିଣିବାର କ୍ଷମତା ନଥିଲା । ତଥାପି ଆପଣ ଧୈର୍ଯ୍ୟ ନହରାଇ ନିଜ କାମ କରିଋଲିଥିଲେ । ବୃତ୍ତି ପାଇ ଭଦ୍ରକ ହାଇସ୍କୁଲ ଗଲେ । ସେଠାରୁ ଆପଣଙ୍କ ହାତଧରି ଭାଗ୍ୟଦେବୀ ଉପରକୁ ଉପରକୁ ନେଲେ । ଶେଷରେ ଲଣ୍ଡନ ମାଟି ଆପଣଙ୍କୁ ଡାକିଲା । ଫେରିଆସି ଶିକ୍ଷା କ୍ଷେତ୍ରରେ ବିଭିନ୍ନପଦ ପଦବୀରେ ରହି, ଓଡ଼ିଆ ଭାଷା, ଶିକ୍ଷାପ୍ରଣାଳୀ ଓ ଶିକ୍ଷାୟତନକୁ ନୂତନ ଦିଗ୍‌ଦର୍ଶନ ଦେଲେ । ନିଷ୍କପଟ ହୃଦୟ, ସରଳ ପଣିଆ, ଅମାୟିକ ବ୍ୟବହାର ଆପଣଙ୍କୁ ସ୍ୱତନ୍ତ୍ର ଆସନ ଦେଇଛି । ମାନବବାଦ ଆପଣଙ୍କ ଜୀବନର ମୂଳମନ୍ତ୍ର ଥିଲା । ଏତେ ବ୍ୟସ୍ତ ଜୀବନ ମଧ୍ୟରେ ଗାଁ ଉଭରବାହିନୀର ଡାକକୁ ଏଡେଇ ଦେଇ ପାରି ନାହାନ୍ତି । ଗାଁରେ ବାଳିକା ସ୍କୁଲ ପ୍ରତିଷ୍ଠା କରିବାଠାରୁ ଆରମ୍ଭ କରି ଡାକ୍ତର ଖାନା ପର୍ଯ୍ୟନ୍ତ ଅନୁଷ୍ଠାନ ଆପଣଙ୍କ ଦାନ ଓ ପ୍ରେରଣାର ନମୁନା ।

ମଣିଷ ତିଆରି କାରଖାନାଟେ ବସାଇଛନ୍ତି । ନା' ତାର ଆଜି କାହ୍ନୁଚରଣ ହାଇସ୍କୁଲ । ପ୍ରତିବର୍ଷ ଏ ମଣିଷ ତିଆରି କାରଖାନାର ଶହଶହ ମଣିଷ ତିଆରି ହେଉଛନ୍ତି । ପୁରୁଣା ବଜାରଠାରୁ ଗୁନିଦରଡ଼ା ପର୍ଯ୍ୟନ୍ତ ରାସ୍ତା ନଥିଲା । ଆପଣଙ୍କ ପ୍ରେରଣା ପାଇ ଏ ରାସ୍ତା ଉଭରବାହିନୀଠାରୁ ଗୁନିଦରଡ଼ା ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀଙ୍କ ସଡ଼କ ଯୋଜନାରେ ସାମିଲ ହୋଇ ପକ୍କା ହୋଇ ପାରିଛି । ୧୯୬୨ ମସିହାରେ ଆପଣଙ୍କ ଦରଖାସ୍ତ ସରକାରଙ୍କ ପାଖକୁ ଯାଇଥିଲା ଏ ଯେଉଁ ହାଇସ୍କୁଲ ଆଜି ଏ ଅଞ୍ଚଳର ଶିକ୍ଷାର କର୍ଣ୍ଣଧାର ହୋଇଛି, ପ୍ରଥମେ ଏହା ବାଳିକା ଏମ.ଇ. ସ୍କୁଲ ଥିଲା । ସରକାର ଏଗୁଡ଼ିକୁ ଅକାମୀ କରିଦେବାରୁ ଏହାକୁ ବାଳିକା ହାଇସ୍କୁଲ କରି ଦିଆଗଲା । ପରେ ଆପଣଙ୍କ ଉଦ୍ୟମ ଫଳରେ ସହଶିକ୍ଷା ହାଇସ୍କୁଲରେ ପରିଣତ ହେଲା ।

ଏ ଅଞ୍ଚଳରେ ସ୍ୱାସ୍ଥ୍ୟସେବା ପାଇଁ କିଛିମାତ୍ର ବ୍ୟବସ୍ଥା ନଥିଲା । ଏ ଅଭାବ ଅନୁଭବ କରି ଆପଣ ପ୍ରଥମେ ଘର ଦେଇ ପରେ ସରକାରଙ୍କୁ ନିଜର ଜମି ହସ୍ତାନ୍ତର କରି ପୌରପାଳିକା ଅଧୀନରେ ଏକ ସ୍ଥାୟୀ ଡାକ୍ତରଖାନା ବସାଇଥିଲେ ।

ପିଲାଟିଏ ହେଲେ ମଧ ଆପଣଙ୍କ ପାଖକୁ ପଠାଇ ଥିବା ପତ୍ରର ଉତ୍ତର ପାଏ । ଦିନକର ଘଟଣା ନ ଲେଖି ରହିପାରୁନି । ଯେତେବେଳେ ଗାଁକୁ ଆସିବାକୁ ଥାଏ, ଆପଣ ପୋଷ୍ଟକାର୍ଡଟିଏ ଲେଖି ଜଣାଇ ଦିଅନ୍ତି । ସେ ଦିନ ଭଦ୍ରକ କଚେରୀ ବସ୍‌ଷ୍ଟାଣ୍ଡକୁ ଆପଣଙ୍କୁ ଆଣିବାକୁ ଯାଇଥିଲି । ଅନିଚ୍ଛା ସତ୍ତ୍ୱେ ଆପଣଙ୍କ ରିକ୍ସାରେ ବସି ଆସିଲି । ଓକିଲାତି ଖାନାଠାରେ ବହୁ ଖ୍ୟାତନାମା ଓକିଲ ଶିକ୍ଷକ ପାଦଧୂଳି ନେଉଥାଆନ୍ତି । ସମସ୍ତଙ୍କୁ ପଦେପଦେ କଥା, 'କିପରି ଅଛ ? ବାପା ଭଲ ଅଛନ୍ତି ? ପିଲାମାନେ କ'ଣ କରୁଛନ୍ତି ?' ସେତେବେଳକୁ ନିଜକୁ କେତେ ଛୋଟ ବୋଲି ଭାବୁଥାଏ । କଥା ଏଡ଼େଇ ରିକ୍ସାରୁ ଓହ୍ଲାଇ ଆସିପାରୁ ନଥାଏ । ଜାତିଧର୍ମ ନିର୍ବିଶେଷରେ ରାସ୍ତାସାରା ସାର୍, ଶତ୍ରୁଘ୍ନ ବାବୁ ଡାକ ଦୁଇପାଖରୁ । ମିଠା ଦୋକାନରେ କାମକରେ ସୁକୁଟା ସାହୁ । ବଲବଲ ବେସନ ହାତକୁ ସାପଫେଣା ପରି ଟେକି ଛୁଟି ସିଲା ରିକ୍ସା ଆଗକୁ । 'କେବେ ଆସିଲେ ? ଘରେ ରହିବ ନା ?' ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କ ମୁହଁରେ ଗୋଟିଏ କଥା- 'ଭଦ୍ରକର ମଣି' । ଘରେ ପରଦିନ ଆରମ୍ଭ ହେଲା ଯାତ୍ରା । ଶହଶହ ଛାତ୍ରଛାତ୍ରୀ ମୁରବୀ ଆସି ରୁଣ୍ଡ ହେଲେ । ସମସ୍ତଙ୍କୁ ମୁହଁରେ ହସ । ଶତ୍ରୁଘ୍ନବାବୁ ଘରକୁ ଆସିଛନ୍ତି ।

ମରିବାର ଅଷ୍ଟଦିନ ପୂର୍ବର ଘଟଣା । ଖ୍ୟାତନାମା ଶିକ୍ଷାବିତ୍ ତଥା ଭଦ୍ରକ ହାଇସ୍କୁଲର ପୂର୍ବତନ ହେଡ୍‌ମାଷ୍ଟର ଫୋନ କରି ଆପଣଙ୍କ ବସା ଠିକଣା ପଋରିଲେ । କାରଣ ପଋରିବାରୁ କହିଲେ, 'ସାର୍‌ଙ୍କୁ ଦେଖିବା ପାଇଁ ଭାରି ଇଚ୍ଛା ହେଉଛି । ଭାବୁଛି ଗାଡ଼ିକରି ଭୁବନେଶ୍ୱର ଯିବି । ୫-୬ଦିନ ପରେ ପୁଣି ଜଣାଇଲେ, 'ମୋ ଭାଗ୍ୟରେ ବୋଧହୁଏ ଦେଖା କରିବାର ନାହିଁ କାରଣ ଯାଇ ପାରୁନି ।'

ସାର୍ ଦୁଇବର୍ଷ ତଳେ ମା'ଙ୍କୁ ହରାଇଥିଲେ । ଆଜି ବାପଠାରୁ ବଳି ବାପକୁ ହରାଇଲି । ମୋ ବ୍ୟକ୍ତିଗତ ଜୀବନ ତଥା ଏ ଅଞ୍ଚଳର ଯେଉଁସ୍ଥାନ ଖାଲି ପଡ଼ିଲା ତାକୁ ପୂରଣ କରିବ କିଏ ?

ଆପଣ ଦୁଇଜଣଙ୍କ ଆତ୍ମା ସ୍ୱର୍ଗରେ ଶାନ୍ତି ଲାଭ କରୁ, ଏତିକି ଭଗବାନଙ୍କ ଠାରେ ପ୍ରାର୍ଥନା ।

ବାଲିପାଟଣା, ଭଦ୍ରକ



# ମଉସା- ଶତ୍ରୁଘ୍ନ ନାଥ

ଅଭୟ ମିଶ୍ର

ସମଗ୍ର ନଗର ଆଜି ସନ୍ତାଭୂତ । ସବୁତ୍ର ଶୋକାକୂଳ ପରିବେଶ । ସତେ ଯେମିତି ଭଦ୍ରକ ଜ୍ୟୋତିଷ୍କ ଆଜି ଅସ୍ତପ୍ରାୟ । ଶହୀଦନଗରର ସେଇ ସୂର୍ଯ୍ୟ ହୋଇଗଲେ ଶୂନ୍ୟ ଦେହୀ । ସମୟର ଖେଳରେ ଆମେ ସମସ୍ତେ ବନ୍ଧା । ଏଇ ସ୍ତମ୍ଭ ସେଇ ମହାନାୟକଙ୍କ ନାମରେ ଲେଖୁଛି ଯିଏ, ଆମ ସମସ୍ତଙ୍କୁ ଛିଡି ଚାଲିଗଲେ ଆରପୁରକୁ । ସମସ୍ତଙ୍କ ଅତି ପରିଚିତ କାହାପାଇଁ ବାପା, ସାର୍ । କାହାର ଜେଜେ, ଭାଇ । କିନ୍ତୁ ମୋ ପାଇଁ ଅତି ଆପଣାର 'ମଉସା' । ସେ ଅନ୍ୟ କେହି ନୁହନ୍ତି, ଶ୍ରୀଯୁକ୍ତ ଶତ୍ରୁଘ୍ନ ନାଥ ।

କଲେଜ ଆଡ଼କୁ ଲମ୍ବିଯାଇଥିବା ସେଇ ଦକ୍ଷିଣାଭିମୁଖୀ ରାସ୍ତା ଉପରେ ସକାଳୁ ବାଡ଼ିଟିଏ ଧରି ଠକ୍‌ଠକ୍ କରି ଚାଲି ଆସନ୍ତି । ସତେ ଯେମିତି ସୂର୍ଯ୍ୟ ଉଦୟ ପ୍ରାୟ । ଧୀରେଧୀରେ ଶାନ୍ତ ସକାଳର ପବନରେ ନିଜକୁ ମିଶାଇ ସକାଳ ବୁଲାଟା ସାନବାବୁ ଚାଲି ଯାଆନ୍ତି ସେ । ନିତି ଦୋକାନ ପିଣ୍ଡାରୁ ଓହ୍ଲାଇ ପ୍ରଣାମ କରେ ମଉସାଙ୍କୁ- ଆଶୀର୍ବାଦ ଟୋକି ଦେଇ କହିଚାଲନ୍ତି- 'ବାବୁରେ (ଅଭି) ଭାଗ୍ୟବାନ ହୁଅ । ଭଗବାନ ତୁମକୁ ସୁଖୀ କରନ୍ତୁ, ନିରୋଗୀ ରଖନ୍ତୁ ଇତ୍ୟାଦି' ।

କେତେ ଆତ୍ମୀୟତା ତାଙ୍କର ଏଇ କଥାପଦକରେ । ମନ ପୁରିଉଠେ । ଆଜି ସେଇ ଭଲ କଥା କୋମଳ ବାଣୀର ପଞ୍ଚାମୃତ ବାଣ୍ଟୁଥିବା ଲୋକ ଜଣକ ଆମ ଗହଣରେ ନାହାନ୍ତି । ଆମର ଏଇ ଇଂରାଜୀ ମିଶ୍ରିତ ସଭ୍ୟତାରେ ଥିବା ଖାଣ୍ଟି, ନିଛକ ଓଡ଼ିଆ ଜଣକ ଥିଲେ ଆମ ମଉସା । ଶିକ୍ଷା, ଦିକ୍ଷା, ଲେଖା, କଥା, ବୋଲି, ଚାଲି ଚଳଣ, ଶୈଳୀ ଆଚରଣ, ଖାଦ୍ୟପେୟ, ପୋଷାକ ପରିଛନ୍ଦ ସବୁଥିରେ ଥିଲେ ସେ ଓଡ଼ିଆ । କେବଳ ଓଡ଼ିଆ । ଧିରତା, ନମ୍ରତା, ସଭ୍ୟତାର ସବୁଗୁଣରେ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ହେଉଛନ୍ତି ଆମ ମଉସା । ଶୟନେ, ଜାଗରଣେ, ଓଡ଼ିଆ ଶିକ୍ଷାର୍ଥୀଙ୍କ ଭାଷାଜ୍ଞାନର ଉନ୍ନତି ପାଇଁ ଚିନ୍ତା କରୁଥିବା ଲୋକ ଜଣକ ମଉସାଙ୍କ ବିନା କେହି ହୋଇନପାରେ ।

ଶତ୍ରୁଘ୍ନ ନାଥ ଜଣେ ସ୍ରଷ୍ଟା । ଦିପ୍ତୀମୟ ବ୍ୟକ୍ତିତ୍ୱ । ସଂସ୍କାରବାଦୀ, ସଫଳକାମୀ ମଣିଷ ଅଟନ୍ତି । ସମାଜକୁ ଏକ ଉଚିତ୍ ବୋଧ, ସଠିକ୍ ପଥରେ ଆଗେଇ ନେବା ପାଇଁ ବୈପ୍ଳବିକ ଚିନ୍ତାଧାରାରେ ବେଷ୍ଟିତ ବ୍ୟକ୍ତି । ସମାଜର ପ୍ରତ୍ୟେକ ଲୋକଙ୍କୁ ସେମାନଙ୍କର କର୍ତ୍ତବ୍ୟରେ ଅବଗତ କରାଇବାକୁ ଯାହାଙ୍କୁ ଲେଖନୀରୁ ଭାଷା ଝରୁଥିଲା, ସେ ଥିଲେ ଶତ୍ରୁଘ୍ନ ନାଥ । ଉତ୍କଳର ଜଣେ ପ୍ରକୃତ ଉତ୍କଳୀୟ, ଶହୀଦନଗରର ଜଣେ ପ୍ରକୃତ ନାଗରିକ ଭାବରେ ନିଜର କର୍ତ୍ତବ୍ୟକୁ ଅତି ସୁଚାରୁ ରୂପେ ଶେଷ ଜୀବନ ପର୍ଯ୍ୟନ୍ତ ସମ୍ପାଦନ କରି ଚାଲିଥିଲେ । ତାଙ୍କ ବିୟୋଗ ଆମ ସମାଜରେ ଏକ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି କଲା । ଅମଳିନ ତାରକା ସଦୃଶ ସେ ଉତ୍କଳ ଆକାଶର ।

ତାଙ୍କର ପ୍ରତିଟି ଭାବନା, କାର୍ଯ୍ୟ, କଥା, ଆମକୁ କର୍ତ୍ତବ୍ୟ ପରାୟଣ ହେବା ପାଇଁ ସଦାସର୍ବଦା ଉଚିତ୍ ପଥ ଦେଖାଇବ- ଏଥିରେ ସନ୍ଦେହ ନାହିଁ ।





# ଏକ ଅନୁସନ୍ଧିତ୍ସୁ ମନନର ଉତ୍ତରାୟଣ

**ଆଚାର୍ଯ୍ୟ ଭାବାନନ୍ଦ**

ଦୋକଛା ମରା ଧୋତି, ଏକ ଗେରୁଆ ପଞ୍ଜାବି, ହାତରେ ଖଣ୍ଡିଏ ଛତା । ଛତାଟିକୁ କ୍ଲାସ ରୁମ୍‌ର ଗୋଟିଏ କଣରେ ରଖି ପାଠ ପଢ଼େଇବା ଆରମ୍ଭ- ଅନର୍ଗଳ ଭାବରେ ବୁଝେଇବାର ଚେଷ୍ଟା- ଏହା ଘଟିଥିଲା ରେଭେନ୍ସା କଲେଜିଏଟ୍ ସ୍କୁଲରେ ୧୯୪୬ ମସିହା ମୋର ଅଷ୍ଟମ ଶ୍ରେଣୀରେ । ତା'ପରେ କିଛିକାଳ ରହିଲେ ତେଲେଙ୍ଗା ବଜାର ବାମ୍ଫି ସାହୀରେ, ଗୋଟିଏ ନୂଆଣିଆ ଚାଳଘର ଭଡ଼ାରେ ନେଇ । ତା'ରି ଅଳ୍ପ ଦୂରରେ ରହୁଥିଲି ମୁଁ ଜଣେ ଛାତ୍ର । ସେହି ବାମ୍ଫି ସାହିର ଗୋଟିଏ ଘରୋଇ ମେସ୍‌ରେ । ବୋଧହୁଏ ସେହି ବର୍ଷ କିମ୍ବା ତା' ପର ବର୍ଷ ଚାଲିଲେ ଲଣ୍ଡନ ଶିକ୍ଷା-ପ୍ରଶିକ୍ଷଣରେ ଉଚ୍ଚତର ଡିଗ୍ରୀ ଲାଭ ଉଦ୍ଦେଶ୍ୟରେ ।

ତା'ପରେ ପୁଣି ବୋଧହୁଏ ସାକ୍ଷାତ ହେଲା- ଅନୁଗୁଳରେ, ସେ ମୌଳିକ ଟ୍ରେନିଂ କଲେଜରେ ଅଧ୍ୟକ୍ଷ ଆଉ ମୁଁ ତତ୍‌କାଳୀନ ବିଜ୍ଞାନ କଲେଜରେ 'ଓଡ଼ିଆ' ଅଧ୍ୟାପକ । ସେଇଠି ପରିଚୟ ଦୃଢ଼ତର ହେଲା- କାରଣ ମୁଁ ବି ରହୁଥିଲି (ସରକାରୀ ଅନୁମତି କ୍ରମେ) ମୌଳିକ ଟ୍ରେନିଂ କଲେଜ ହତାରେ, ଗୋଟିଏ କ୍ୱାର୍ଟରରେ- ସେହି କଲେଜର । କ୍ରମେ ଅନୁଭବହେଲା ପାଶ୍ଚାତ୍ୟ ଶିକ୍ଷାର ସାରସଂଗ୍ରହ କର୍ମରେ, ଚିନ୍ତନରେ, ପ୍ରଶିକ୍ଷଣରେ- 'ଶିକ୍ଷା' ଜଗତରେ ଏକ ନବୀକରଣର ପ୍ରୟାସରେ ନିମଗ୍ନ- ସେଇଠୁ ମୁଁ ଚାଲିଲି ଆମେରିକା । ବୋଧହୁଏ ଖଣ୍ଡେ ଦୁଇଖଣ୍ଡ ପତ୍ର ପାଇଥିଲି । ଆମେରିକାର ଶିକ୍ଷା ପ୍ରଣାଳୀ ସମ୍ପର୍କରେ ସୂଚନା ଦେବା ପାଇଁ । ମୁଁ ବି ବୁଲିବୁଲି ଫେରିଲି- ଗାନ୍ଧିଜୀଙ୍କୁ ଆବିଷ୍କାର କରିବା ପାଇଁ, ଏଇ ଭାରତ ଭୂମିରେ- ଯେଉଁଠାରେ ଅନ୍ତତଃ 'ଶିକ୍ଷାଜଗତ'ରେ ସେ (ଗାନ୍ଧିଜୀ) ରହିଗଲେ ଏବେ ବି ଏକ ଅବହେଳିତ ଯୁଗପୁରୁଷ (ମହାତ୍ମା) ଭାବରେ ।

ଯା'ରି ଭିତରେ ପ୍ରଫେସର ନାଥ, ଶିକ୍ଷା ଜଗତରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରି ସଫଳ ହେଲେ କି ନାହିଁ କରିପାରିବି ନାହିଁ- କିନ୍ତୁ ଯେଉଁ ମହତ୍ ଚେଷ୍ଟାରେ ସାରା ଜୀବନ କଟେଇ ଦେଲେ, ତାହା ତାଙ୍କ ବ୍ୟକ୍ତିତ୍ୱରେ ଅନୁପ୍ରାଣିତ ଛାତ୍ର, ଶିକ୍ଷକଙ୍କର ସ୍ମୃତିରେ ଆସ୍ଥାନ ମାଡ଼ି ବସିଲେ- ବହୁ ଜଣା ଅଜଣା ଅନୁଷ୍ଠାନର ଉପଦେଷ୍ଟା ବି ରହୁଥିଲେ । ଅବସ୍ଥା ଚକ୍ର ରେ ସେ ଏକାମ୍ର ମହାବିଦ୍ୟାଳୟ, ନଳିନୀଦେବୀ ମହିଳା ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ହେଲେ । ପୁଣି ମୁଁ ବି ଅଘୋଷିତ ଅଧ୍ୟକ୍ଷ ଭାବରେ ଏକାମ୍ର ମହାବିଦ୍ୟାଳୟରେ ତାଙ୍କ ସ୍ଥାନରେ ଅଭିଷିକ୍ତ ହୋଇଥିଲି- ଘଣ୍ଟାଏ, ଦିଘଣ୍ଟା ପାଇଁ - ପୁଣି ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟକୁ ତାଙ୍କୁ ଡାକି ଆଣିଥିଲି- ପରିଚାଳନା ସମିତିର ଅଧ୍ୟକ୍ଷ ଭାବରେ (ମୁଁ ଥିଲି ଏହି ମହାବିଦ୍ୟାଳୟର ତଥାକଥିତ ପ୍ରତିଷ୍ଠାତା) ।

ଗାନ୍ଧି-ଚିନ୍ତନର ଜଣେ ପ୍ରଗାଢ଼ ଅନୁରକ୍ତ, ଅନୁସନ୍ଧାନୀ ଭାବରେ ସେ ସାରା ଜୀବନ କଟେଇ ଦେଲେ- ପରିବର୍ତ୍ତନ ଆଣିବା ପାଇଁ ଶିକ୍ଷା ଜଗତରେ । ପୁଣି 'ଜନଶିକ୍ଷା ଅନୁଷ୍ଠାନ'ର ସଭାପତି ଭାବରେ । କ୍ରମେ ଆମେ ପାରିବାରିକ ସୂତ୍ରରେ ସହଯୋଗୀ ଭାବରେ ବାନ୍ଧି ହୋଇପଡ଼ିଲୁ । ଜଣେ ପ୍ରକାଶକ ଭାବରେ ତାଙ୍କର ୫ଖଣ୍ଡ ବହି - School & Strategies in Education, Contemporary ... in Education, ଶିକ୍ଷାର ଧାରା, ଜୀବନ ଶିକ୍ଷା, ଆମେ ଓ ସେମାନେ (ମୟୁର ପବ୍ଲେକେଶନ) ପ୍ରକାଶ କଲା । ପୁଣି Institute of Corporative Studies, ଆମେ ମିଶି ତିଆରି କଲୁ- କିଛି ପତ୍ରିକା /ପୁସ୍ତକ ପ୍ରକାଶ ପାଇଲା, ଇତ୍ୟାଦି ଇତ୍ୟାଦି...

କ୍ରମଶଃ ସେ ଅନୁଭବ କରିବା ଆରମ୍ଭ କଲେ, ଆଉ ମୁଁ ବି ହୃଦୟଙ୍ଗମ କରିବାକୁ ବାଧ୍ୟ ହେଲି ଯେ ଓଡ଼ିଶାରେ 'ଗାନ୍ଧି-ଚିନ୍ତକ' କ୍ରମଶଃ ପାଶୋରି ଯାଉଛି । ଶେଷ ଜୀବନରେ ସେ 'ମହିମାଧର୍ମ' ଉପରେ ଗବେଷଣା, ଲେଖାଲେଖି କଲେ । ବୋଧହୁଏ ସେହି ଧର୍ମରେ ଦୀକ୍ଷିତ ବି ହେଲେ- ମୁଁ ବି ଗ୍ରହଣ କଲି 'ଗାନ୍ଧିଧର୍ମ' । ସମୟର ସ୍ରୋତରେ ସେ ରହିଲେ ଏକ ଅନୁସନ୍ଧିତ୍ସୁ ମନନର ଉତ୍ତରାଧିକାରୀ ହୋଇ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷା ଜଗତରେ ଥିବା ମୌଳିକତାର ଗବେଷକ ଭାବରେ । ଆଉ ମୁଁ 'ରାଜନୀତି'ରେ ବ୍ୟସ୍ତ ରହିଲି 'ଗାନ୍ଧି-ଚିନ୍ତନ'ରେ ଅନୁଗାମୀ ଭାବରେ । ଭାଷା, ସାହିତ୍ୟ, ସଂସ୍କୃତିର ବିପୁଳତା ଭିତରେ ।

ଏବେ ତାଙ୍କର 'ଉତ୍ତରାୟଣ' ହୋଇଗଲା । ସେ ଫେରିଗଲେ ତାଙ୍କ 'ନିଜ ଘରକୁ' ।



# ଚିଠି ଟିଏ ପୂଜ୍ୟ ସାର୍‌ଙ୍କୁ

ସଂଘମିତ୍ରା

ପୂଜ୍ୟ ସାର୍,

ମୋର ଶିରଲୋଟା ପ୍ରଣାମ ନେବେ । ଦଶ ତାରିଖଠାରୁ ଆପଣ ଆମ ଗହଣରୁ ବିଦାୟ ନେଲେଣି । ସାର୍ ଆପଣ ଥିଲେ ଶିକ୍ଷକମାନଙ୍କର ଶିକ୍ଷକ । ବିଦେଶରୁ ଉଚ୍ଚଶିକ୍ଷା ଲାଭକରି ଫେରିଥିବା ମଣିଷ ଆପଣ । କେମିତି ଏକ ସରଳ ଥିଲେ । ଆପଣ ମୌଳିକ ଶିକ୍ଷାନୀତି ଉପରେ ଅନେକ ପୁସ୍ତକ ଲେଖିଛନ୍ତି । ସନ୍ଥକବି ଭୀମ ଭୋଇ ତଥା ମହିମା ଧର୍ମର ଆଦର୍ଶରେ ଆପଣ ଆଜୀବନ ଅନୁପ୍ରାଣିତ ଥିଲେ ଓ ତଦନୁସାରେ ଜୀବନ ବଞ୍ଚୁଥିଲେ । ଆମ ଭିତରେ ଥାଇ ବି ଆପଣ ଥିଲେ ଆମଠାରୁ ସ୍ୱତନ୍ତ୍ର ଏକ ଦିବ୍ୟଜୀବନର ଅଧିକାରୀ । ଆପଣଙ୍କ ମରଶରୀର ନିକଟରେ ଠିଆହୋଇ ମୁଁ କେମିତି କାଳର ପ୍ରତିଲୋମ ଗତିରେ ଫେରିଯାଉଥିଲି ପଛକୁ । ୧୯୭୬-୭୭ରେ ମୁଁ ରିଜିଓନାଲ କଲେଜରେ ବିଇଡି କରୁଥାଏ । ଆପଣ ଆମକୁ ପଢ଼ାଉଥିଲେ School Community Relationship ଓ ମହାତ୍ମାଗାନ୍ଧୀ ତଥା ଶ୍ରୀ ଅରବିନ୍ଦଙ୍କ ପ୍ରବର୍ତ୍ତିତ ଶିକ୍ଷାର ଧାରା । ଆପଣ ଘଣ୍ଟା ବାଜିଲେ ଶ୍ରେଣୀ ଗୃହକୁ ଆସନ୍ତି । ଘଣ୍ଟା ବାଜିବାକୁ ଦଶମିନିଟ୍ ଥାଇ ପଢ଼ା ସାରନ୍ତି । ବ୍ଲାକ୍‌ବୋର୍ଡରେ ସେ ସମୟରେ ବିଭିନ୍ନ ଆଲୋଚ୍ୟ ବିଷୟ ଲେଖୁ ଥାଆନ୍ତି । ସେ ଦଶ ମିନିଟ୍ ଆପଣ ପଢ଼ାଉଥିବା ପାଠର ଉତ୍ତର ନିହାତି ୪-୫ଜଣ ଛାତ୍ରଛାତ୍ରୀଙ୍କୁ ପଚାରନ୍ତି ଓ ଘଣ୍ଟା ବାଜିଲେ ଉପସ୍ଥାନ ଖାତାଟି ଧରି ଶ୍ରେଣୀରୁ ପଦାକୁ ଯାଆନ୍ତି । ଅଧ୍ୟୟନ ଓ ଅଧ୍ୟାପନା ଥିଲା ଆପଣଙ୍କ ପାଇଁ ତପସ୍ୟା ।

ସାର୍, ଶହୀଦନଗର ଆସି ରହିବା ପରେ ଆପଣଙ୍କର ବହୁତ ସ୍ନେହ ଶ୍ରଦ୍ଧା ପାଇଛି । ଆପଣଙ୍କ ପୁଅଝିଅଙ୍କ ବାହାଘରରେ ଭୋଜି ଖାଇଛି । ଆପଣଙ୍କୁ ସାଙ୍ଗରେ ନେଇ ଅନେକ ସଭାସମିତିକୁ ଯାଇଛି । ଗୋକର୍ଣ୍ଣିକା ସମ୍ମାନ ପାଇବା ଦିନ ଆପଣ ଆଉ ମୁଁ ଜାଜପୁର ଯାଇଥିଲେ । ମୋର ମନେଅଛି । ଆପଣ ସକାଳୁ ରବିବାବୁଙ୍କ ପୁଅକୁ ନେଇ ପ୍ରାତଃ ଭ୍ରମଣରେ ଯାଆନ୍ତି । ଆମେ ଦେଖୁ । ଖୁସି ହେଉ । ସେପୁଅଟି ଏବେ ଡେଙ୍ଗା ହୋଇଯାଇଛି ସତ, ମାତ୍ର ଆପଣଙ୍କ ମନଦେହ ପାଖରେ ସେ ଠିଆ ହୋଇଥିଲା ସେଇମିତି ଶିଶୁ ସୁଲଭ ଆଖିରେ ଜିଜ୍ଞାସା ନେଇ । ସତେ କି ତା'ର ସବୁ ପ୍ରଶ୍ନର ସମ୍ଭାବ୍ୟ ଉତ୍ତର ରଖିଥିବା ବୟସ୍କ ମଣିଷଟିର ଏମିତି ଚାଲିଯିବାକୁ ସେ ଗ୍ରହଣ କରିପାରୁ ନଥିଲା ।

ମନେ ଅଛି ସାର୍, ଆଶୀ ଦଶକରେ 'ନବଜାଗରଣ' ପତ୍ରିକା ସହିତ ଆପଣ ଓ ପ୍ରାଣବନ୍ଧୁ ସାର୍‌ଙ୍କର ସଂପୃକ୍ତି । ଜନ୍ମେଜୟ, ସୁରଥ ଆହୁରି ଅନେକ କିଶୋରରୁ ଯୁବକ ହେଉଥିବା ପିଲାଙ୍କର ଆପଣ ମୁରବୀ । ମୁଁ ଆପଣ ଓ ପିଲାଙ୍କର ମଧ୍ୟବର୍ତ୍ତୀ ପାଢ଼ିର ପ୍ରତିନିଧିଟିଏ । ନବଜାଗରଣର ସମ୍ପାଦକୀୟ ଲେଖି ମୁଁ ଆପଣଙ୍କ ନିକଟରୁ ସଂଶୋଧନ କରାଇ ନିଏ । ଗୋଟିଏ ବାକ୍ୟ କଡ଼ା ହୋଇଗଲେ କି ଶବ୍ଦଟିଏ ଏପଟ ସେପଟ ହେଲେ ଆପଣ କହନ୍ତି, ଏଗୁଡ଼ା ରଖନା । କାହାକୁ କଷ୍ଟ ଦେବା ଆମର କାମ ନୁହେଁ । ମୁଁ ଆପଣଙ୍କ ଆଗରେ ବସି ସଂଶୋଧନ କରେ । ଆପଣ କହନ୍ତି, 'ମା'ରେ, ଆଉ ଭଲପିଲା ଆସୁନାହାନ୍ତି ।' ମୁଁ କହେ, 'ଆସିବେ ସାର୍, ଆପଣ ବିଶ୍ୱାସ ରଖନ୍ତୁ ।'

ଘରକୁ ଗଲେ କଦଳିଟିଏ, ଅମୃତଭଣ୍ଡା ଖଣ୍ଡିଏ, କିଛି ନହେଲେ ବିସ୍କୁଟ ଖଣ୍ଡିଏ ନଖୁଆଇ ମାଉସୀ ଛାଡ଼ନ୍ତି ନାହିଁ । ମୋ ଝିଅର ବାହାଘର ପାଇଁ ଆପଣ କେତେ ବ୍ୟସ୍ତ ହେଉଥିଲେ ସତରେ । ସେ ନଳିନୀ ଦେବୀରେ ପଢ଼ିଲା । ସେଠିକା ଛାତ୍ରସମାଜର ପ୍ରେସିଡେଣ୍ଟ ହେଲା । ଆପଣ କେତେ ସ୍ନେହରେ ତାକୁ ଆଶୀର୍ବାଦ କରିଥିଲେ ମୋର ମନେ ଅଛି ସାର୍ । ପ୍ରାଣବନ୍ଧୁ ସାର୍ ଆଉ ଆପଣଙ୍କୁ ନଳିନୀ ଦେବୀ ମଞ୍ଚରେ ଏକାଠି ବସାଇ ସେ କେତେ ଅସନ୍ତୋଷ ପାଇଥିଲା ତାହା ମୁଁ ଦେଖିଛି । ଆମେ ସମସ୍ତେ ସେଦିନ ଆପଣଙ୍କ ଭାଷଣରେ ଅଭିଭୂତ ହୋଇ ପଡ଼ିଥିଲୁ । ତା' ବାହାଘର ଠିକ୍ ହେବା ପରେ ଆପଣ ଟୋକାଁ ବିଷୟରେ ବୁଝୁଥିଲେ ବାରମ୍ବାର ଆଉ ତା' ପୁଅକୁ ବି ଯାଇ ପଚାରୁଥିଲେ ।

ମାଉସୀଙ୍କ ତିରୋଧାନ କଥା କାଲି ଭଳି ମନେପଡୁଛି । ଆପଣ କହିଲେ, 'ଯା ମା, ତୋ ମାଆ ସେଠି ଶୋଇଛନ୍ତି । ଦେଖା କରି ଆ'- ଆପଣ ଠିଆ ହୋଇଥିଲେ ଦମ୍ଭ ଧରି । ଯଦିବା ଭିତରେ ଭିତରେ ଭାଙ୍ଗିପଡୁଥିଲେ । ସାର୍, ବୋହୂ ଗୀତାଙ୍କୁ ପାଠ ପଢ଼ାଇବାରେ ଆପଣଙ୍କ ଝୁକ୍ ମୁଁ ଦେଖିଛି । ସେ ବି ଆପଣଙ୍କ କଥାମାନି ପିଲାଛୁଆ ଜଞ୍ଜାଳ ସହିତ ପାଠପଢ଼ି ଏମ୍.ଏ. ପାସ୍ କରିଛନ୍ତି । ଆପଣଙ୍କ ପାଖେପାଖେ ରହି ଆପଣଙ୍କ ଦାୟିତ୍ୱ ନେଇଛନ୍ତି । ସେ ଖୁବ୍ କାନ୍ଦୁଥିଲେ ସାର୍ । ଆପଣ ସେମାନଙ୍କୁ ଆଶୀର୍ବାଦ ଦିଅନ୍ତୁ ।

ଆଉ କିଛି ଲେଖୁନି ସାର୍ । ଜାଣେନି ଏ ଚିଠି ଆପଣଙ୍କ ପାଖରେ ପହଞ୍ଚିବ କି ନାହିଁ । ତଥାପି ମୋ ମନ ବୁଝିଯିବ ତ ! ମୁଁ ଜାଣେ ଆପଣ ସୂକ୍ଷ୍ମ ଦେହରେ ଅଛନ୍ତି ଆମ ସହିତ । ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥା ଥିବା ପର୍ଯ୍ୟନ୍ତ, ଓଡ଼ିଶାରେ ମୂଲ୍ୟବୋଧକୁ ସମ୍ବଳ କରି ଶିକ୍ଷକଟିଏ ଥିବା ପର୍ଯ୍ୟନ୍ତ, ଆପଣ ବଞ୍ଚି ରହିବେ । ଆପଣ ପରା ବୁଝାଇ ଥିଲେ, 'ହିରଣ୍ମୟେନ ପ୍ରାଣେଣ ସତ୍ୟ ସ୍ୟା ପିହିତ ମୁଖମ୍' । ହଁ ସାର୍, ସତ୍ୟର ମୁଖ ଯେ ଦିନେ ଅବଶ୍ୟ ଦିଶିବ ସେହି ଆଶା ନେଇ ମୁଁ ଚାଲିଛି- ଆପଣ ନିଶ୍ଚୟ ସେହି ଅଲେଖ ପରଂବ୍ରହ୍ମଙ୍କ ଆସନ ପାଖରେ ଶାନ୍ତିରେ ଥିବେ । ସମୟ ହେଲେ ଏ ଚିଠିରେଟିକେ ଆଖି ବୁଲାଇ ଦେବେ । ଭୁଲ ଥିଲେ ନାଲ କାଳିରେ ଗୋଲ ବୁଲାଇ ମୋ ପାଖକୁ ପଠାଇ ଦେବେ ।

ଆପଣଙ୍କର ସ୍ନେହଧନ୍ୟା



# ପୂଜ୍ୟଗୁରୁ ଶତ୍ରୁଘ୍ନ ନାଥ

**ଭାଗୀରଥି ନାୟକ**

ମୁଁ ୧୯୪୮ ମସିହାରେ ତଦାନୀନ୍ତନ କଟକ ଟ୍ରେନିଂ କଲେଜରେ ଛାତ୍ର ଥିଲାବେଳେ ସାର୍ - ମୋର ପୂଜ୍ୟ ଗୁରୁ ଶତ୍ରୁଘ୍ନ ନାଥ- ଇଂଲଣ୍ଡରୁ ଫେରି ସେଠାରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ଅଳ୍ପଦିନ ପରେ ସେ ରେଭେନ୍‌ସା କଲେଜକୁ ବଦଳି ହେଲେ । ତାଙ୍କର ଅଳ୍ପଦିନ ରହଣି ମଧ୍ୟରେ ପରିଚୟ ମାତ୍ର ହୋଇଥିଲା ।

୧୯୫୯ ମସିହାରେ ଅନୁଗୁଳର ମୌଳିକ ଶିକ୍ଷକ ତାଲିମ ମହାବିଦ୍ୟାଳୟରେ ମୁଁ ଅଧ୍ୟାପକ ରୂପେ ଯୋଗ ଦେଲି । ସେଠାରେ ସାର୍ ଅଧ୍ୟକ୍ଷ ରୂପେ କାର୍ଯ୍ୟ କରୁଥାଆନ୍ତି । ସେହି ଠାରେ ହିଁ ମୋର ସାର୍‌ଙ୍କ ସହିତ ସମ୍ବନ୍ଧ ଘନିଷ୍ଠ ହେଲା । ପାରିବାରିକ ସମ୍ପର୍କ ମଧ୍ୟ ଗଢ଼ି ଉଠିଲା । ସେ କଲେଜରେ ଯେତେଦିନ ତାଙ୍କ ସହିତ କାର୍ଯ୍ୟ କରିଛି, ସେ ମଧ୍ୟରେ ଦିନକ ପାଇଁ ମଧ୍ୟ ସେ ଅଧ୍ୟକ୍ଷ ହିସାବରେ ମୋ ଉପରେ କ୍ଷମତା ପ୍ରୟୋଗ କରି ନାହାନ୍ତି । ବରଂ ସେଠାରେ ମୁଁ ତାଙ୍କଠାରୁ ସ୍ନେହ ଓ ଶ୍ରଦ୍ଧା ହିଁ ପାଇଛି ।

ସେ ଲଣ୍ଡନରେ ଅଧ୍ୟୟନ କରୁଥିଲା ବେଳେ ସି.ଏମ୍. ଫ୍ଲେମିଂ ତାଙ୍କ ଶିକ୍ଷକ ଓ ଉପଦେଷ୍ଟା ଥିଲେ । ସେ ଶିକ୍ଷା ମନସ୍ତତ୍ତ୍ୱ, ଶିକ୍ଷଣ ପଦ୍ଧତିର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଆଦି ସମ୍ବନ୍ଧରେ ଅନେକ ଉଚ୍ଚକୋଟୀର ପୁସ୍ତକ ରଚନା କରିଛନ୍ତି । ସାର୍ ମୋତେ ସେଗୁଡ଼ିକ ପଢ଼ିବା ପାଇଁ ପ୍ରେରଣା ଦେଉଥିଲେ । ଆଉ ଗୋଟିଏ କ୍ଷୁଦ୍ର ସାରଗର୍ଭକ ଉପଦେଶ ସାର୍‌ଙ୍କୁ ଫ୍ଲେମିଂ ସାହେବ୍ ଦେଇଥିବା କଥା ବାରମ୍ବାର କହି ଅନୁସରଣ କରିବା ନିମନ୍ତେ ମୋତେ ଉତ୍ସାହିତ କରି ଅଛନ୍ତି । ସେଇଠି ହେଲା 'Dig, Dig, Dig' ଅର୍ଥାତ୍ 'ଖୋଳିଚାଲ, ଖୋଳିଚାଲ ଏବଂ ଖୋଳିଚାଲ' । ଏହାର ସାରମର୍ମ ହେଲା ଯେପରି ଖୋଳିଲେ ଭୂ-ଗର୍ଭରୁ ହୀରା, ନୀଳା ପ୍ରଭୃତି ବହୁମୂଲ୍ୟ ରତ୍ନ ମିଳିଥାଏ, ସେହିପରି ଗଭୀର ଅଧ୍ୟୟନ ଦ୍ୱାରା ସାରତତ୍ତ୍ୱ ଉପଲବ୍ଧ ହୋଇଥାଏ । ସାର୍‌ଙ୍କ ଅଧ୍ୟକ୍ଷତାରେ ସାର୍, ଶରତ ମହାରଣା, ମୁଁ ଓ ଅକ୍ଷୟ ମହାନ୍ତି - ଏହି ଚାରିଜଣଙ୍କୁ ନେଇ ଗଠିତ ସମ୍ପାଦକ ମଣ୍ଡଳୀ 'ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରୟୋଗ'ର ସମ୍ପାଦନା କାର୍ଯ୍ୟ ସାର୍‌ଙ୍କ ବାସଭବନରେ ହେଉଥିଲା । ଦିନେଦିନେ ସକାଳ ୯ଟାରୁ ସନ୍ଧ୍ୟା ୭ଟା ଯାଏ କାମ ଚାଲେ । ଖରାବେଳେ ସାର୍‌ଙ୍କ ଘରେ ଖିଆପିଆ ହୁଏ ।

ମା' ତ ଆଗରୁ ଯାଇଥିଲେ । ଏବେ ସାର୍ ଗଲେ । ସ୍ମୃତି ତ ଅନେକ, ଅସରନ୍ତି । ସାର୍ ଥିଲେ ଜଣେ ସନ୍ଥ ଏବଂ ଆଧ୍ୟାତ୍ମିକ ଚେତନାର ବାହକ । ସେ ଥିଲେ ଶୂନ୍ୟ ଉପାସକ । ତାଙ୍କ ଆତ୍ମା ମରଶରୀର ତ୍ୟାଗ କରି ଅମୃତ ସୋପାନରେ ଆରୋହଣ ପୂର୍ବକ ସେହି ମହାଶୂନ୍ୟ ପଥରେ ପଥିକ ଯୁଧିଷ୍ଠିର ସ୍ୱର୍ଗାରୋହଣ କଲା ସଦୃଶ ସେ ଆଉ ପଛକୁ ଚାହିଁବେ ନାହିଁ କି ଫେରିବେ ନାହିଁ । ତାଙ୍କର ଅମୀୟ ଉପଦେଶ ବାଣୀ ଆମ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କର୍ଣ୍ଣ କୁହରେ ଗୁଞ୍ଜରିତ ହେଉଥିବ ଓ ତାଙ୍କର ଆଶୀର୍ବାଦର ସୁଧାମୟ ଧାର ଆମ ଶୀରରେ ବୃଷ୍ଟି ହେଉଥିବ । ଓଁ ଶାନ୍ତି, ଶାନ୍ତି, ଶାନ୍ତି...

## ଅସ୍ତମିତ ସୂର୍ଯ୍ୟ - ଶତ୍ରୁଘ୍ନ ନାଥ

**ଆଶିଷ ମହାପାତ୍ର**

ଉତ୍କଳର ସୃଷ୍ଟି ଅନ୍ତ, ସାହିତ୍ୟରେ ପାଏନା କାତ
ଏକାଛାଡ଼ି ଆମକୁ ତୁମେ କହିଁ ଗଲ ଶତ୍ରୁଘ୍ନ ନାଥ ?
ଓଡ଼ିଶାର ମାଟି ଆଜି ହୋଇ ଉଠେ ଶୋକାକୁଳ,
ଖୋଜାପଡ଼େ ଗଲ କାହିଁ ସତେ ଅବା ସାରି ଖେଳ !
ଶିକ୍ଷା, ଦିକ୍ଷା, ଭାଷା ଖୋଜେ ପ୍ରଶିକ୍ଷକ ଗଲେ କାହିଁ ?
ଉତ୍କଳ ଉତ୍ତର ଦିଏ ଖାଦେ ଖାଲି କଇଁ କଇଁ ।
ଓଜନ ହରା ହୋଇଉଠେ ଆମ ରାଜ୍ୟ ଆମ ମାଟି,
କିଏ ପଥ ଦେଖାଇବ ପାହିନି ଏ ଅଜ୍ଞାନ ରାତି ।
କହିଥାନ୍ତ ଗଲାବେଳେ ଆଉକେବେ ଜନ୍ମନେବ,
ପୁଣି ଏଇ ଉତ୍କଳକୁ ତୁମ ଭାଷା ଶିଖାଇବ ।
ଉଇଁ ଥିଲ ସୂର୍ଯ୍ୟ ହୋଇ ବାଣ୍ଟିବାକୁ ଜ୍ଞାନାଲୋକ,
ଜାଳି ଦେଇ ଗଲ ତୁମେ ଅନ୍ଧାରରେ ଜ୍ଞାନ ଦୀପ ।
ଅସ୍ତମିତ ସୂର୍ଯ୍ୟ ହୋଇ ଗଲ କାହିଁ ତୁମେ ନଇଁ
ଧନ୍ୟ ତୁମେ ଧନ୍ୟ ତୁମେ ଧନ୍ୟ ତୁମେ ମୃତ୍ୟୁଞ୍ଜୟୀ ।



# ସ୍ମୃତିରୁ ଖିଏ

ଡ. ଏକାଦଶୀ ପ୍ରଧାନ

କବିବର ରାଧାନାଥ ରାୟଙ୍କ ଭାଷାରେ-

କେହି ରହି ନାହିଁ ରହିବ ନାହିଁଟି ଭବରଙ୍ଗ ଭୂମି ତଳେ,
ସର୍ବେ ନିଜନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।

ଏ କଥାର ସତ୍ୟତା ଅପେକ୍ଷା ସତ୍ୟ ବଦ୍ଧତା ଅନେକ ବେଶି । ଆଉ ଜଣେ ଉତ୍କଳୀୟ କବିଙ୍କ ଭାଷାରେ-

ମାରାତ୍ମକ ନୁହେଁ ମୃତ୍ୟୁ ବିଧାନ, ମୃତ୍ୟୁ ଅମୃତର ଅଟେ ସୋପାନ ।
ଜୀବନ-ମୃତ୍ୟୁର ଲୀଳା ରହସ୍ୟ, ମୃତ୍ୟୁ ମୃତ୍ତିକାରେ ଜୀବନ ଶସ୍ୟ,
ଲୋକ ଲୋକାନ୍ତରେ, କାଳ-କାଳାନ୍ତରେ
ଆବିର୍ଭାବେ, ତିରୋଭାବେ ॥

ଜନ୍ମ ଆଉ ମୃତ୍ୟୁ ଏକ ଚିରନ୍ତନ ସତ୍ୟ । ଏହି ସତ୍ୟଠାରୁ ଆହୁରି ବାସ୍ତବିକ ସତ୍ୟ ହେଉଛି ଜୀବନକାଳ ମଧ୍ୟରେ ସେ ଛାଡ଼ି ଚାଲିଯାଇଥିବା ଅଭୂଲା ସ୍ମୃତି । ମରଶରୀର ମାଟିରେ ମିଶିଯାଏ । ଆତ୍ମା ପଞ୍ଚଭୂତରେ ଲୀନ ହୁଏ ବୋଲି ଆମର ବିଶ୍ୱାସ । କିନ୍ତୁ ଜୀବନକାଳ ମଧ୍ୟରେ ଛାଡ଼ି ଯାଇଥିବା ଅମ୍ଳାନ ସ୍ମୃତିରାଜିକୁ ଆମେ ସାଇତି ରଖୁ ।

କେତେ ବ୍ୟକ୍ତି ଏ ପୃଥିବୀକୁ ଆସନ୍ତି, ଯିଏ କି ତାଙ୍କ ଜୀବନକାଳ ମଧ୍ୟରେ ଜନ-ଜୀବନ ସହ ତାଙ୍କର ଆଚରଣ ବ୍ୟବହାର, ମଣିଷପଣିଆରେ ଏମିତି ଆପଣାର ହୋଇ ଯାଆନ୍ତି ଯେ, ତାଙ୍କ ବିୟୋଗରେ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ପଡ଼େ । ତାଙ୍କୁ ଝୁରି ହେଉ । ଏମିତି ଜଣେ ଦରଦୀ ମନର ମଣିଷ ଥିଲେ ପ୍ରଫେସର ଶତ୍ରୁଘ୍ନ ନାଥ ମହାଶୟ ।

ଯଥାର୍ଥରେ ସେ ଥିଲେ ଜଣେ ଆଧ୍ୟାତ୍ମିକବାଦୀ ଆଦର୍ଶ ମଣିଷ । ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍ ଭାବେ ପିଲାଦିନେ ତାଙ୍କ ନାମ ଶୁଣିଥିଲି । ହଠାତ୍ ଦିନେ ଅହମ୍ମଦ ବକ୍ସ ହାଇସ୍କୁଲରେ ମହିମାଧର୍ମ ମହାସଭାରେ ଯୋଗ ଦେବା କଥା ଶୁଣି ସେଠାରେ ପହଞ୍ଚିଲି । ସାକ୍ଷାତ କଲି ଏବଂ ସେଦିନ ସେ ଧର୍ମ ଆଲୋଚନାରେ ସେ ମହାଶୟ ସଭାପତିତ୍ୱ କରୁଥାଆନ୍ତି ଏବଂ ମୋତେ ବକ୍ତବ୍ୟ ରଖିବାକୁ ସୁଯୋଗ ଦେଇଥିଲେ । ମୁଁ ମହିମା ଧର୍ମର ଅଦ୍ୱୈତବାଦ କଥା ଆଲୋଚନା କରିଥିଲି । ମୋର ବକ୍ତବ୍ୟ ପରେପରେ ମତେ ଏକାଦଶୀ ଭାଇ ବୋଲି ସମ୍ବୋଧନ କରି ଆଲୋଚନାର ଭୂୟସୀ ପ୍ରଶଂସା ଖାଲି କରିନଥିଲେ, ସେ ଯେଉଁ ପ୍ରେରଣା, ପ୍ରୋତ୍ସାହନା ଦେଇଥିଲେ, ତାହା ଅବିସ୍ମରଣୀୟ । ମହିମା ଧର୍ମରେ ଆଶ୍ରିତ ହେତୁ ମୁଁ ତାଙ୍କୁ ଶରଣ କରି ତାଙ୍କ ସହିଦନଗର ବାସଭବନରେ ପ୍ରବେଶ କରିବା ମାତ୍ରକେ ଶରଣ ଶରଣ କହି ଭଗବାନ ଭକ୍ତକୁ ଆଦରି ନେବା ପରି ମନେହେଲା । ମହିମାଧର୍ମର ସନ୍ନ୍ୟାସୀଙ୍କ ଭଳି ଜଗତରେ ସମସ୍ତ ସ୍ତ୍ରୀ-ପୁରୁଷ ଛୋଟ ହେଉ ବା ବଡ଼ ହେଉ, ମାଆବାପା ସମ୍ବୋଧନର ସ୍ୱରୂପ ତାଙ୍କଠାରେ ମଧ୍ୟ ଠିକ୍ ଏହା ପରିଲକ୍ଷିତ ହୋଇଥିଲା । 'ବାପା' ସମ୍ବୋଧନ କରି କିପରି ଅଛ ବୋଲି ମତେ ପଚାରିଥିଲେ । ଏହାପରେ ପାଣିପଣା ଟିକେ ହେଉ କହି ପାଣି ଗ୍ଲାସ ସହିତ କିଛି ଫଳ ମଧ୍ୟ ଖାଇବାକୁ ଦେଇଥିଲେ । ଆଜିଠାରୁ ପ୍ରଭୁଙ୍କ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାକୁ ପରାମର୍ଶ ଦେଇଥିଲେ ।

ପ୍ରେରଣା ପ୍ରୋତ୍ସାହନାଭରା ଚିଠି ପରେ ଚିଠି ଅନେକ ପାଇଛି । ଭଲ ମଣିଷ ହେବା ପାଇଁ ଅନେକ ଖୋରାକ ପାଇଛି । ଚିଠିଗୁଡ଼ିକ ସବୁ ଧନରତ୍ନଠାରୁ ଅଧିକ ମନେ କରି ଏବେ ମଧ୍ୟ ସାଇତି ରଖିଛି ।

ଆଜି କିନ୍ତୁ ସେହି ମହାନ ବ୍ୟକ୍ତିତ୍ୱଙ୍କ ସ୍ମରଣିକା ପାଇଁ 'ଗୀତା ମା'' ଅନୁରୋଧ କରିଛନ୍ତି । କ'ଣ ଲେଖିବି କଲମ ଆଗକୁ ଯାଉନାହିଁ । ତଥାପି ସ୍ମୃତି ବିଜଡ଼ିତ କେତେକ କଥାକୁ ସ୍ମରଣ କରୁଛି । ଆମ ମାହାଙ୍ଗା ପୁଷ୍ପଗିରି କଲେଜର ଛାତ୍ର ସଂସଦରେ ତତ୍କାଳୀନ ମନ୍ତ୍ରୀ ଶେଖ୍ ମତଲୁବ ଅଲ୍ଲୀଙ୍କ ସହ ଯୋଗଦେଇ ଯେଉଁ ସରଳ ଭାଷାର ଓଜସ୍ୱିନୀ ଉଦ୍‌ବୋଧନ ଦେଇଥିଲେ ତାହା ଏବେ ମଧ୍ୟ ସମସ୍ତଙ୍କର ସ୍ମରଣୀୟ ହୋଇ ରହିଛି । ସୁସ୍ଥ ସମାଜ ପାଇଁ ସେଦିନର ଯେଉଁ ଅମର୍ଷବାଣୀ ଏବେ ବି ଆମ ଅଞ୍ଚଳ ପାଇଁ ଜାଜ୍ୱଲ୍ୟମାନ ହୋଇ ରହିଛି ।

ଓଡ଼ିଶାରେ ଗାନ୍ଧୀ ମୌଳିକ ଶିକ୍ଷାର ପ୍ରବର୍ତ୍ତକ, ମହିମା ଧର୍ମରେ ଆଶ୍ରିତ ତଥା ସୃଜନଶୀଳତାର ମୂର୍ତ୍ତିମନ୍ତ ପ୍ରତୀକ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଯୋଗୁଁ ମହିମା ଧର୍ମ ସାହିତ୍ୟରେ ମୁଁ ଗବେଷଣା କରିପାରିଥିଲି । ଯେତେବେଳେ ଯାଇ ମହାଶୟଙ୍କ ନିକଟରେ ପହଞ୍ଚେ ତାଙ୍କର ଆତ୍ମୀୟତା ନିକଟରେ ମଥା ନଇଁଯାଏ ।

ବିଶିଷ୍ଟ ଶିକ୍ଷାବିତ୍ ଉତ୍କଳରତ୍ନ ପ୍ରଫେସର ଶତ୍ରୁଘ୍ନ ନାଥ ଜଣେ ସରଳ, ନିରାଡ଼ମ୍ବର, ଛାତ୍ରବତ୍ସଳ, ମାନବସମ୍ବେଦୀ, ଅମାୟିକ ବ୍ୟକ୍ତିତ୍ୱର ଅଧିକାରୀ ନଥିଲେ, ନିଜେ ଏକ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମହାଶୟଙ୍କର ଅଧିକାଂଶ ପୁସ୍ତକ ପଢ଼ିବାର ମୁଁ ସୁଯୋଗ ପାଇଛି । ଜୀବନ ଶିକ୍ଷା, ବିଶ୍ୱବନ୍ଧୁ, ପିଲାଙ୍କ ବ୍ରହ୍ମଜ୍ଞାନ ଆଦି ବହୁ ଉପାଦେୟ ପୁସ୍ତକୁ ବିବାହ ବ୍ରତରେ ଉପହାର ଆକାରରେ ଦେଇ ମୁଁ ଆନନ୍ଦ ପାଇଛି । ବହୁ ଶିକ୍ଷାନୁଷ୍ଠାନ, ସାଂସ୍କୃତିକ ଅନୁଷ୍ଠାନ,



ବିଶେଷ ଭାବରେ ମହିମାଧର୍ମାନୁଷ୍ଠାନରେ ଜଡ଼ିତ ହୋଇ ନିଜକୁ କେବଳ ଉତ୍ସର୍ଗୀକୃତ କରିନାହାନ୍ତି, କଥା କାର୍ଯ୍ୟରେ କେବେବି କେଉଁ ପରିସ୍ଥିତିରେ ଧାରା ବଦଳେଇ ନାହାନ୍ତି ।

ଯଥାର୍ଥରେ ସେ ଥିଲେ ଜଣେ ଆଧାତ୍ମିକବାଦୀ ଆଦର୍ଶ ପୁରୁଷ । ନିଜସ୍ୱ ଅନୁଭୂତି ଓ ଅଭିଜ୍ଞତାକୁ ସରଳ ଭାଷାରେ ଖୁବ୍ ଛୋଟଛୋଟ ବାକ୍ୟରେ ବହୁ ଉପାଦେୟ ପୁସ୍ତକ ରଚନା କରିଥିଲେ । ଜୀବନର ସାୟାହ୍ନରେ ପଦାର୍ପଣ କରି ମଧ୍ୟ ସତତ ଥିରେ କର୍ମ ତତ୍ପର । ସେ ନିଜକୁ ଜଣେ ବନ୍ଧୁବତ୍ସଳ, ପରୋପକାରୀ, ଶିକ୍ଷାବିତ୍, ସମାଜ ସଂସ୍କାରକ, ସଂଗଠକ, ସତ୍ୟନିଷ୍ଠ, ସରଳ, ଦରଦୀ ମଣିଷ ଭାବେ ଶେଷ ପର୍ଯ୍ୟନ୍ତ ପ୍ରତିପାଦିତ କରିଥିଲେ । ଉଜ୍ଜ୍ୱଳିତ ପ୍ରଦୀପ ନିମିଷକେ ନିର୍ବାପିତ ହେଲା । ତାଙ୍କ ତିରୋଧାନରେ ଚତୁର୍ଦିଗ ଅନ୍ଧାର ଦିଶିଲା । କବି ରାଧାନାଥଙ୍କ ଭାଷାରେ-

ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ,<br>
ମାତ୍ର ଯଶ ଦେହେ ତୁମ୍ଭେ ଆୟୁଷ୍ମାନ ।

# ପିତୃ-ପ୍ରତିମ ଆମ ସାର୍ ଆଉ ନାହାନ୍ତି

**ଶ୍ରୀମତୀ ଶାନ୍ତିଲତା ମିଶ୍ର**

ମାର୍ଚ୍ଚ ୧୦ତାରିଖ, ଶନିବାର । ସନ୍ଧ୍ୟା ୬ଟା, ଇ'ଟିଭି ଖୋଲି ହଠାତ୍ ଦେଖିଲି, 'ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ପରଲୋକ' । ମୁଣ୍ଡଟା କ'ଣ ହୋଇଗଲା । ଛଅମାଶ ହେବ ସାର୍‌କୁ ଦେଖା କରିବାକୁ ଯିବି ବୋଲି ମୋର ଅସୁସ୍ଥତା ହେତୁ ଯାଇ ପାରିଲି ନାହିଁ । ସାର୍ ଠକି ଚାଲିଗଲେ । ଚଳଚ୍ଚିତ୍ର ପରି ମନେପଡ଼ିଗଲା ଗୋଟିଏ ପରେ ଗୋଟିଏ ଘଟଣା ।

୧୯୬୩ ମସିହାରେ ମୁଁ ମୋର ସ୍ୱାମୀ ଭାବଗ୍ରାହୀ ମିଶ୍ରଙ୍କ ସହ ଅନୁଗୁଳରେ ବେସିକ୍ ଟ୍ରେନିଂ କ୍ୱାର୍ଟରରେ ସାରଙ୍କ ଘର ପାଖରେ ରହୁଥାଏ । ତିନି ଚାରିଦିନ ଦେଖା ନହେଲେ ଡକାଇ ପଠାନ୍ତି । ପୁଅ-ବୋହୂର ଆଦର ମୋତେ ଅଭିଭୂତ କରିଥିଲା । ଏତେ ସ୍ନେହ ଶ୍ରଦ୍ଧା ପାଇ ମୁଁ ଭାବିଥିଲି ମୋର ବାପା ଅତି ନିକଟରେ ଅଛନ୍ତି । ୧୯୬୩ ମସିହା ନଭେମ୍ବର ୧୬ରେ ଆମର ପୁତ୍ର ସନ୍ତାନଟିଏ ହୋଇ ଘରେ ଆନନ୍ଦର ଲହରୀ ଖେଳାଇ ଦେଲା । ସାର୍ ଓ ମାଉସୀ ବାରମ୍ବାର ଆସୁଥାନ୍ତି । କିନ୍ତୁ ୧୮ ତାରିଖରେ ସେ ପୁଅ ଆମକୁ ଦୁଃଖ ସାଗରରେ ଭସାଇ ଚାଲିଗଲା । ହେଲେ ସାରଙ୍କ ପଦେ କଥାରେ ମୁଁ ନିଜକୁ ବୁଝିବାକୁ ଚେଷ୍ଟା କଲି- 'ମା'ରେ ମହାନ ଆତ୍ମା ସଂସାରର ଦୁଃଖ ଯନ୍ତ୍ରଣା ଭୋଗିବା ତା କର୍ମରେ ନାହିଁ ।' ଉପନିଷଦର ଆତ୍ମା-ପରମାତ୍ମା ମନେପକାଇ ଆଶ୍ୱସ୍ତ ହେଲି ।

ପୁଣି ସାରଙ୍କ ସହ ମୋର ଦେଖାହେଲା ଭୁବନେଶ୍ୱରରେ ୧୯୬୪ ମସିହାରେ ଟାଉନ ବସ୍ ଭିତରେ । ମୁଁ ଭୁବନେଶ୍ୱର ମହିଳା କଲେଜ (ଏବେ ରମାଦେବୀ ମହିଳା କଲେଜ)ରେ ଅଧ୍ୟାପନା କରୁଥାଏ । ସାର୍ ୟୁନିଟ୍ -୬ରେ ରହୁଥାନ୍ତି । ବସ୍‌ରେ ମୁଣ୍ଡ ବୁଲାଇଦେଲା । ଦେଖିଲି ସାର୍ ମୋତେ ଧରି ଜଣକୁ ସିଟ୍‌ରୁ ଉଠାଇ ବସାଇ ଦେଲେ । କହିଲେ- ମା'ରେ ଆଉ ବସ୍‌ରେ ନଆସି, ତୁମେ ରିକ୍ସା କଲେଜ ଯିବାଆସିବା କର । ସେ ବୋଧେ ଜାଣିପାରିଥିଲେ ମୁଁ ଆମର ଦ୍ୱିତୀୟ ସନ୍ତାନର ମା' ହେବାକୁ ଯାଉଛି । ବେଦବାକ୍ୟ ପରି ତାଙ୍କର ଉପଦେଶ ମାନି ରିକ୍ସା ଧରିଲି ।

ଭୁବନେଶ୍ୱରରେ ସଂପର୍କ ନିବିଡ଼ ହେଲା । ପୁନର୍ବାର ଆମେ ଏକାଠି ହେଲୁ ୧୯୭୮ରେ ଏକାମ୍ର କଲେଜରେ । ସାର୍ ଅଧକ୍ଷ ଓ ମୁଁ ସଂସ୍କୃତି ଅଧ୍ୟାପିକା ଥାଏ । ଆମ ସାନ ଝିଅ ଖୁସିକୁ ବହୁତ ଭଲ ପାଉଥିଲେ ଓ ସାଙ୍ଗ ବୋଲି ଡାକୁଥିଲେ । ତାଙ୍କର ଅନାବିଳ ସ୍ନେହରେ ଆମ ବଂଶଟି ଯାକ ବାନ୍ଧି ହୋଇଯାଇଥିଲୁ । ଦିନେ ମୋ ଭାଣିଜୀ ରିନା ଓ ତିନି ଝିଅଙ୍କୁ ଧରି ସାରଙ୍କ ବାସଭବନକୁ ବୁଲି ଯାଇଥିଲି । ସାରଙ୍କର ସେ ଖୁସି ମୁଁ ଆଦୌ ଭୁଲି ପାରିବି ନାହିଁ । ଘରକୁ ଫେରି ମୋ ଭାଣିଜୀକୁ ପଚାରିଲି- ଆମ ସାରଙ୍କୁ କେମିତି ଲାଗିଲା ? ରୀନା କହିଲା- ମାଇଁ ତମ ସାରଙ୍କୁ ଏତେ ଭଲ ଲାଗିଲା ଯେ ଯୁବକ ହେଉଥିଲେ ବାହାହେଇ ପଡ଼ିଥାନ୍ତି ।

ସ୍ନେହ ଶ୍ରଦ୍ଧାର ପ୍ରତିମୂର୍ତ୍ତି ଓ ରକ୍ଷା କବଚ ଆମକୁ ଠକି ଦେଇ ଚାଲିଗଲେ । ସେହି ଅନନ୍ତ ମହାଶୂନ୍ୟକୁ ଯେଉଁଠି ସେ ପାଆନ୍ତୁ ବ୍ରହ୍ମାନନ୍ଦ- ଏତିକି ମୋର ଈଶ୍ୱରଙ୍କଠାରେ ପ୍ରାର୍ଥନା ।

ଲେବର କଲୋନୀ, ଭୁବନେଶ୍ୱର



# ମାର୍ଗ ପ୍ରଦର୍ଶକ ପ୍ରଫେସର ଶତ୍ରୁଘ୍ନ ନାଥ

**ଡ. ତ୍ରିନାଥ ହୋତା**

ପ୍ରଫେସର ଶତ୍ରୁଘ୍ନ ନାଥ ସ୍ୱୟଂ ଥିଲେ ଏକ ଅନୁଷ୍ଠାନ । ବହୁ ସରକାରୀ ଓ ବେସରକାରୀ ସଂସ୍ଥାର ସେ ଥିଲେ ମୁଖ୍ୟ ପରିଚାଳକ । ଅଗୁଆ ସୂତାଗୁଡ଼ିକୁ ବାହାର କରିଦେଇ ଅନୁଷ୍ଠାନଟି ନିଜ ଗୋଡ଼ରେ ଠିଆ ହୋଇ ବ୍ୟବସ୍ଥା କରିଦେଇ ସେ ନିଜେ ଓହରି ଯାଉଥିଲେ । ମୋର ବ୍ୟକ୍ତିଗତ ଓ ଆନୁଷ୍ଠାନିକ ସଂପର୍କର ଅନୁଭୂତି ଏଠାରେ କିୟଂଦଶ ପ୍ରକାଶ କରୁଛି ।

ବ୍ୟକ୍ତିଗତ ସାକ୍ଷାତ ଯଦିବା ୧୯୮୩ ମସିହାରେ ହୋଇଥିଲା, ଆନୁଷ୍ଠାନିକ ସଂପର୍କ ବଢ଼ିଲା ୧୯୮୫ ମସିହା ଏପ୍ରିଲ୍ ୧୪ ପଣା ସଂକ୍ରାନ୍ତି ଦିନଠାରୁ । ମୁଁ ସେତେବେଳେ ଥାଏ ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟର ଅଧକ୍ଷ ଦାୟିତ୍ୱରେ । ୧୯୮୫-୮୮ ପର୍ଯ୍ୟନ୍ତ ସେ ଥିଲେ ମହାବିଦ୍ୟାଳୟର ପରିଚାଳନା ସମିତିର ସଭାପତି । ତାଙ୍କର ପ୍ରଶାସନ କେବଳ ଗଠନମୂଳକ ନଥିଲା, ତାହା ଥିଲା ଅନୁଷ୍ଠାନରେ ଥିବା କର୍ମଚାରୀମାନଙ୍କର ପ୍ରେରଣାର ଉତ୍ସ । ମହାବିଦ୍ୟାଳୟର ସରକାରୀ ସ୍ୱୀକୃତି ଓ +୨ ପରିଷଦର ସହବନ୍ଧନ ଆଣିବାରେ ମହାଶୟଙ୍କ ଭୂମିକା ଥିଲା ଚିରସ୍ମରଣୀୟ ଓ ଚିରବନ୍ଦନୀୟ । ମହାଶୟଙ୍କ ସମୟାନୁବର୍ତ୍ତିତା ମୋର ମୁଖ୍ୟ ଶିକ୍ଷଣୀୟ ଥିଲା । ଠିକ୍ ସମୟରେ ଠିକ୍ ପଦକ୍ଷେପ ନନେଲେ ସେ ଅଭିମାନ କରୁଥିଲେ । ୧୯୮୮ରେ ମହାବିଦ୍ୟାଳୟର ସଭାପତି ଦାୟିତ୍ୱରୁ ସ୍ୱତଃ ଅବ୍ୟାହତି ନେଲେ, ତଥାପି ମହାବିଦ୍ୟାଳୟର ଅଧ୍ୟାପକ, ଅଧ୍ୟାପିକା ଓ ଅନ୍ୟାନ୍ୟ କର୍ମଚାରୀଙ୍କର ଦୁଃଖ ବୁଝୁଥିଲେ । ଆଚାର୍ଯ୍ୟ ମହାଶୟଙ୍କୁ ମୁଁ ଦେଖି ନଥିଲି । କିନ୍ତୁ ଦ୍ୱିତୀୟ ଆଚାର୍ଯ୍ୟ ହରିହର ପ୍ରଫେସର ସ୍ୱର୍ଗତ ଶତ୍ରୁଘ୍ନ ନାଥଙ୍କୁ ଦେଖିବାରୁ ସବୁଦିନ ପାଇଁ ବଞ୍ଚିତ ହେଲି ।

**ତାଙ୍କର ପ୍ରଶାସନ କେବଳ ଗଠନମୂଳକ ନଥିଲା, ତାହା ଥିଲା ଅନୁଷ୍ଠାନରେ ଥିବା କର୍ମଚାରୀମାନଙ୍କର ପ୍ରେରଣାର ଉତ୍ସ । ମହାବିଦ୍ୟାଳୟର ସରକାରୀ ସ୍ୱୀକୃତି ଓ +୨ ପରିଷଦର ସହବନ୍ଧନ ଆଣିବାରେ ମହାଶୟଙ୍କ ଭୂମିକା ଥିଲା ଚିରସ୍ମରଣୀୟ ଓ ଚିରବନ୍ଦନୀୟ ।**

ଏହାପରେ ଧୀରେଧୀରେ ମୋର ସଂପର୍କ ବଢ଼ିଲା । ମୋର ସୌଭାଗ୍ୟ ଥିଲା କେତୋଟି ନିର୍ଦ୍ଦିଷ୍ଟ ଦିନମାନଙ୍କରେ ମହାଶୟଙ୍କ ସହିତ ସଂସ୍କୃତରେ ଆଲୋଚନା କରିବା । ସାରା ଜୀବନ ଛାତ୍ରଟିଏ ପରି ନୂଆନୂଆ ଶିକ୍ଷା ଅର୍ଜନ କରିବାଥିଲା ମହାଶୟଙ୍କ ଅଧିବସାୟ । ମହାଶୟଙ୍କ ପ୍ରେରଣାରେ ୧୯୯୦ ମସିହାରେ ଜନ୍ମ ନେଲା ଆଚାର୍ଯ୍ୟ ହରିହର ସାଂସ୍କୃତିକ ପରିଷଦ । ସେଥିଲେ ପରିଷଦର ଉପଦେଷ୍ଟା ଅଧ୍ୟକ୍ଷ ।

ସେ ମହାତ୍ମାଙ୍କ ସହିତ ମୋର ଶେଷ ସାକ୍ଷାତ ଓ କଥାବାର୍ତ୍ତା ଥିଲା ୨୦୦୬ ଫେବୃୟାରୀ ୧ ତାରିଖ ବୁଧବାର ସକାଳ ୮ଟାରେ । ମୋ ସହିତ ଥିଲେ ମୋର ଧର୍ମପତ୍ନୀ ନଳିନୀପ୍ରଭା । କାହିଁକି କେଜାଣି ଚାଲିଯିବେ ବୋଲି ତାଙ୍କର ବୋହୂଙ୍କୁ ଡାକି କହିଲେ, ଏ ମା' ସହିତ ଗୋଟିଏ ଫଟୋଗ୍ରାଫ୍ ନେବାକୁ । ସେଦିନ ସେ ସଂଗତି ଥିଲା ଆମ ପାଇଁ ସ୍ୱର୍ଗ । ସେ ଶ୍ରଦ୍ଧା, ସେ ଆପଣାର ଭାବ ଆଉ କାହାଠାରୁ ମିଳିବ । କାହାଠାରୁ ପାଇବୁ ସେ ବାପାରେ, ମା'ରେ ଡାକ । ସମସ୍ୟା ଘେରରେ ଥିଲାବେଳେ ବହୁବାର ମୋ ଘରକୁ ଆସି ମୋତେ ଧୈର୍ଯ୍ୟ ଦେଇଛନ୍ତି । ବାଟ ଦେଖାଇଛନ୍ତି । ଆଜି ସେସବୁ ଚାଲିଯାଇଛି । ପରଦୁଃଖରେ ଦୁଃଖୀ ମଣିଷଟି ପାର୍ଥିବ ଶରୀରରେ ଆଉ ଆମ ପାଖରେ ନାହାନ୍ତି ସତ, କିନ୍ତୁ ଯଶଃ ଶରୀରରେ ସେ ସବୁଦିନ ପାଇଁ ଜୀବିତ । ୧୯୧୫ ମସିହା ଫେବୃୟାରୀ ୧ ତାରିଖରୁ ୨୦୦୬ ମସିହା ମାର୍ଚ୍ଚ ୧୦ ତାରିଖ ଦୀର୍ଘ ୯୧ ବର୍ଷର ଜୀବନ ଥିଲା ଭୀମଭୋଇଙ୍କ ପରି ପର ଦୁଃଖରେ ଦୁଃଖୀ । ପ୍ରତିଦିନର ଜୀବନଚର୍ଯ୍ୟା ଥିଲା ଅଲେଖ ଧର୍ମ ଏବଂ ମନସା-ବଚସା-କର୍ମଣା । ଥିଲା ଗାନ୍ଧୀ ଦର୍ଶନ । ଆଚାର୍ଯ୍ୟ ହରିହର ମହାବିଦ୍ୟାଳୟ ଓ ସାଂସ୍କୃତିକ ପରିଷଦର କର୍ମକର୍ତ୍ତାମାନଙ୍କୁ ସ୍ୱର୍ଗଗାମୀ ହୋଇ ସେ ଆଶୀର୍ବାଦ କରନ୍ତୁ, ଏହା ହିଁ ମୋର ପ୍ରାର୍ଥନା । ଯଥାର୍ଥରେ କହିବାକୁ ଗଲେ-

ପରୋପକାରୈକଧିୟଃ ସ୍ୱସୁଖାୟ ଗତସ୍ପୃହାଃ ।
ଜଗଦ୍ଧିତାୟ ଜାୟନ୍ତେ ମାନବାଃ କେଽପି ଭୂତଳେ ॥



# ରାମନାମ ସତ୍ୟ ହେ.....

**ଚିନ୍ତାମଣି ଆଚାର୍ଯ୍ୟ**

ପ୍ରାୟ ଏକାନବେ ବର୍ଷ ପୂର୍ବେ ଭଦ୍ରକ ନିକଟବର୍ତ୍ତୀ ଉତ୍ତରବାହିନୀ ନାମକ କ୍ଷୁଦ୍ର ପଲ୍ଲୀ ଜନ୍ମ ଲାଭ କରି କେତେ ଲୋକଙ୍କୁ ହସାଇ ଥିଲେ- ଯୋଗଜନ୍ମା ହେଲେ । ପ୍ରତିଷ୍ଠା ଲାଭ କଲେ । ଅସଂଖ୍ୟ ଜନତାଙ୍କୁ କନ୍ଦାଇ କନ୍ଦାଇ ୨୦୦୬ ମସିହା ମାର୍ଚ୍ଚ ୧୦ ତାରିଖ ରାତି ୧୧ଟା ୨୫ ମିନିଟ୍‌ରେ ମହାପ୍ରୟାଣ ଲାଭ କଲେ । ସହିଦନଗରର ବାସଭବନ ଶୋକାକୁଳ ଜନତାରେ ପୂରିଗଲା । ସମସ୍ତଙ୍କ ଚକ୍ଷୁରେ ଲୋତକ । କହି ଉଠିଲେ- ଆଲୋକ ଲିଭିଗଲା । ଏପରି ସରଳ ନିରାଡ଼ମ୍ବର ସୁପୁରୁଷ ଆଉ ଜନ୍ମିବେ ନାହିଁ । ଏ ହେଉଛନ୍ତି ପ୍ରଫେସର ଶତ୍ରୁଘ୍ନ ନାଥ । ଖବର ପାଇ ଦୌଡ଼ିଲି ମୁଁ ମୋ ଗୁରୁଙ୍କ ଶେଷ ଦର୍ଶନ ପାଇଁ- ପୁଷ୍ପାଞ୍ଜଳି ଦେଇ, ପାଦଧୂଳି ମୁଣ୍ଡରେ ଲଗାଇ ଭୋ-ଭୋ କାନ୍ଦି ଉଠିଲି ।

ମୋତେ ଭାରି ଭଲ ପାଆନ୍ତି । ମୋର ଅସ୍ୱାଭାବିକ ଅନୁପସ୍ଥିତି ଅନୁଭବ କଲେ ବୋହୂ ଗୀତାଦେବୀ ଫୋନ୍ କରିବେ ବା ଚୁକୁନାକୁ ଆମ ଘରକୁ ପଠାଇବେ । ଯାଅ, କହ ସାର୍ ଖୋଜୁଛନ୍ତି । ବିନା ବିଳମ୍ବେ ଉପସ୍ଥିତ ହୋଇ ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଏ ।

କହନ୍ତି ବାପା ଆସିଗଲ ଭଲ ହେଲା । ବୋହୂ ଗୀତାଦେବୀ ମତେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି । ଜାଣନ୍ତି ସେ ମୁଁ ତାଙ୍କ ସ୍ୱାମୀ ଡାକ୍ତର ରବିବାବୁଙ୍କ ସାର୍ ବୋଲି । ଅଳ୍ପ ସମୟ ରହଣି ମଧ୍ୟରେ କେହି ସନ୍ତୁଷ୍ଟ ହୁଅନ୍ତି ନାହିଁ । କହନ୍ତି ଆମ ଘରେ ଚା' ପାଣି ନକରି କେହି ଯାଆନ୍ତି ନାହିଁ । ଚାଲି ଆସେ । କେତେପ୍ରକାର ସୁମିଷ୍ଟ ଖାଦ୍ୟ ଖାଇବାକୁ ବାଧ୍ୟ ।

ପ୍ରଫେସର ନାଥ ଯଶସ୍ୱୀ ହେଲେ । 'ଉତ୍କଳ ରତ୍ନ' ଉପାଧିରେ ଭୂଷିତ ହେଲେ । ଅର୍ଦ୍ଧଶତ ପୁସ୍ତକ ରଚନା କରି ଉତ୍କଳର ବାଣୀଭଣ୍ଡାରକୁ ସମୃଦ୍ଧ କଲେ । ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ବହୁ ପୁସ୍ତକ ପ୍ରକାଶକ ତାଙ୍କ ଆତ୍ମଜୀବନୀ ଛାପିବାକୁ ଧାଡ଼ି ଜମେଇଲେ । ଶେଷରେ ପ୍ରଜାତନ୍ତ୍ର ପ୍ରଚାର ସମିତି 'ଜୀବନୀ' ପ୍ରକାଶ କଲେ । ବହୁ ପ୍ରତିଷ୍ଠାନ ତାଙ୍କ ଗୁଣରାଜି ପ୍ରକାଶ କରିବାକୁ ଆଗ୍ରହୀ ହେଲେ । ସେ ସେସବୁ ଅଧ୍ୟୟନ ପାଠ କରିବାର ସୁଯୋଗ ପାଇ ଧନ୍ୟ ହୋଇଛି ।

ମୌଳିକ ଶିକ୍ଷାର ପ୍ରବକ୍ତା ଥିଲେ । ଅନୁଗୁଳ ବେସିକ୍ ସାଇନ୍‌ସ କଲେଜର ଅଧ୍ୟକ୍ଷ ଥାଆନ୍ତି । ଗାନ୍ଧିବାଦର ପରମ ଭକ୍ତ । ନିଜ କାମ ନିଜକୁ କରିବାକୁ ହେବ । ପାଇଖାନା ସଫା ହେବ । ଛାତ୍ରଙ୍କୁ ଅନୁରୋଧ କଲେ ଅନୁରୋଧ ରକ୍ଷା କରିବାକୁ ପଛଘୁଞ୍ଚା ଦେଲେ ସେମାନେ । ପ୍ରଫେସର ନାଥ କହିବା ଅପେକ୍ଷା, କାର୍ଯ୍ୟରେ ଦେଖାଇବାରେ ଧୁରନ୍ଧର । ସେ ଜାଣିଥିଲେ 'ପଛଘୁଞ୍ଚା ନାହିଁ ବୀରର ଜାତକେ, ନମରେ ସେ କେବେ ପରାଣ ଆତଙ୍କେ ।' ସାଥିରେ ବାଲ୍‌ଟିଏ ପାଣି ଓ ଖଡ଼ିକା ମୁଠା ଧରି ପାଇଖାନା ସଫା ଆରମ୍ଭ କରିଦେଲେ । ସଫେଇ ଶବ୍ଦ ଶିଷ୍ୟଙ୍କ କାନରେ ବାଜିଲା । ବିଚାରିଲେ ଏ କି ଶବ୍ଦ । ଆସି ହାଜର ହେଲେ ପାଇଖାନା ପାଖରେ । ନରମି ଗଲେ । ନିଜ ଲାଜ ନିଜକୁ ଘାରିଲା । ଗୁରୁଙ୍କ ହାତରୁ ଖଡିକା ମୁଠ଼ା ନେଇ ପାଇଖାନା ସଫାରେ ଲାଗି ଗଲେ । ପ୍ରଫେସର ନାଥ ଅଧିକ ପାଣ୍ଡିତ୍ୟ ଲାଭ ପାଇଁ ବିଲାତ ଗଲେ । ଆସିଲେ । ବିଲାତି କାଇଦା ତାଙ୍କୁ ଛୁଇଁ ପାରି ନଥିଲା । ସର୍ବଦା ଧୋତି, ଚଦର । ସେ ପୁଣି ଖଦଡ଼ ୫ହାତିଆ ମରଦ । ଧୋବ ଫରଫର ଧୋତି ପଞ୍ଜାବି ଚଦର ତାଙ୍କୁ ବେଶ୍ ମାନେ ।

ମାର୍ଚ୍ଚ ୧୧ତାରିଖ ଶନିବାର । ବହୁ ପ୍ରଫେସର ନାଥ-ପ୍ରେମୀ ଶେଷ ଦର୍ଶନ ଲାଭ କରିବା ପରେ ସଜବାଜ ଚାଲିଲା ସତ୍ୟ ନଗର ଶ୍ମଶାନରେ ମର ଶରୀର ସଂସ୍କାର ପାଇଁ । ଭକ୍ତ ଦାସଙ୍କ ମନବୋଧ ଚଉତିଶା ପ୍ରଦର ବୋଲି - ଛୁଇଁବେ ନାହିଁ ତତେ ବୋଲିବେ ମଡ଼ା, ଛ ଖଣ୍ଡି କାଠ ତତେ ହୋଇବ ଲୋଡ଼ା । ସେଇ ଛ'ଖଣ୍ଡି ବାଉଁଶ ନିର୍ମିତ ଶବାଧାରରେ ମର ଶରୀର ଚାଲିଲା, ସତ୍ୟ ନଗର ଶ୍ମଶାନ ଅଭିମୁଖେ । ଡାକ ଚାଲିଲା- ରାମ ନାମ ସତ୍ୟ ହେ, ହରି ନାମ ସତ୍ୟ ହେ ।

ସେହି ଭକ୍ତ ଦାସ ବୋଲିଛନ୍ତି - ତୋ ସଙ୍ଗ ତୁ ଗଲେଣି ଯେତେକ ଦିନ / ସାଥେ ନେଇ ଗଲେ କେ କେତେ ଧନରେ । ଅଧ୍ୟାପକ ନାଥ ସାଥିରେ ସିନା ଧନ ନେଲେ ନାହିଁ, କିନ୍ତୁ ସାଥିରେ ନେଇଗଲେ ଧର୍ମ, ସୁନାମ, ଯଶ ଓ କିର୍ତ୍ତୀ । ଆଜି ସେ ମରି ମଧ୍ୟ ଅମର ଅଛନ୍ତି ଓ ରହିଥିବେ ମଧ୍ୟ । .

ଧର୍ମର ଜୟ ହେଉ ।

**ପ୍ରାକ୍ତନ ପ୍ରଧାନ ଶିକ୍ଷକ, ୩୪୬, ଶହୀଦ ନଗର**



# ବାକି ରହିଗଲା ଅନେକ କିଛି...

ଅଂଜଳି

୨୦୦୬ ମସିହା ମାର୍ଚ୍ଚ ୧୦ ତାରିଖ ଶୁକ୍ରବାର । ସନ୍ଧ୍ୟା ସମୟ । ମନ ବ୍ୟସ୍ତ ହେଉଛି, ଘରେ ରହିପାରୁନି । ଧାଇଁ ଯାଇଛି ବାପାଙ୍କ ପାଖକୁ । ଶାନ୍ତ ଭାବରେ ଶୋଇପଡ଼ିଛନ୍ତି । ଉଠେଇବାକୁ ଚେଷ୍ଟା କରିଛି । ସବୁଦିନ ପରି ହସିଲେ, ଖୁସି ହୋଇ କହିଲେ ଆସିଗଲୁ । ମୋ ଜିନିଷ ବାନ୍ଧିଦେ । ଭାବିଲି ମନେମନେ ମୋତେ କାହିଁକି ଖୋଜୁଥିଲେ । ପଚାରିଲି- କେଉଁ କେଉଁ ଜିନିଷ ସଜାଡ଼ିବି ? ଉତ୍ତର ମିଳିଲା- ମୋ ଚଷମା, ବାଡ଼ି ଆଉ ବିଛଣା । ଚଷମା ଆଖିରେ ପିନ୍ଧାଇ ଦେଲି । ହାତରେ ବାଡ଼ିଟି ଧରାଇଦେଲି । ତାପରେ ନୀରବ ରହିଗଲେ । ସାତଟା ପନ୍ଦର ମିନିଟ୍ କଥା । କିଛି ବୁଝିପାରୁ ନଥାଏ । କେବେ ଏପରି କହନ୍ତି ନାହିଁ । ସମସ୍ତଙ୍କୁ ପଚାରୁଥାଏ ଏହାର କାରଣ କ'ଣ ? ନିଜେ ବି ଅନୁଭବ କରୁଥାଏ କିଛି ଶାରୀରିକ କଷ୍ଟ ନାହିଁ । ଭଲ ତ ଅଛନ୍ତି । ମୁଁ କାହିଁକି ବୁଝି ପାରିଲିନି ଆପଣଙ୍କ ଉଦ୍ଦେଶ୍ୟକୁ । ଅନ୍ଧାନାଂ ଗଜଦର୍ଶନଂ ଭଳି ମୁଁ କାହିଁ ବୁଝିବି ଆପଣଙ୍କୁ । ମୋତି ମୂଲ୍ୟ କାହିଁ ଜାଣିବ ଶବର । ସେତେବେଳକୁ ଆପଣ ଅମର ପଥରେ ଯାତ୍ରୀ ହେଲେଣି । ଲେଖିବା ଆପଣଙ୍କ ଲକ୍ଷ୍ୟ । ତେଣୁ ଚଷମାକୁ ସାଥି କଲେଣି । ଏକୁଟିଆ ଯିବା ପାଇଁ ବାଡ଼ି ଧରିଲେଣି । କ'ଣ ଭୁଲ କଲି ଆପଣଙ୍କ ପାଖରେ, ଟିକେ ବୁଝାଇଦେଇ ପାରିଲେନି । ମୁଁ କିଛି ମାଗିବା ପୂର୍ବରୁ ଆପଣତ ମୋତେ ସବୁ ଦେଇଦେଲେ । ହେଲେ ମୋର ଭୁଲ କେଉଁଠି ରହିଲା । କ'ଣ ଉତ୍ତରାୟଣକୁ ଅପେକ୍ଷା କରିଥିଲେ କି ? ପାପନାଶିନୀ ଏକାଦଶୀକୁ ଆଦରି ନେଲେ ।

କ୍ୟାପିଟାଲ୍ ହାଇସ୍କୁଲ, ୟୁନିଟ୍-୩ରେ ପ୍ରଥମେ ଚାକିରି ଆରମ୍ଭ କଲି । ଚାକିରିରେ ଯୋଗଦେବା ଦିନଠାରୁ ପ୍ରାୟେ ସାତଦିନ ଯାଏ ନିଜେ ନେଇ ଛାଡ଼ି ଆସନ୍ତି । ମନେପଡ଼େ ପ୍ରଥମ ଦିନ କହିଥିଲେ- ସମସ୍ତଙ୍କୁ ବିଶ୍ୱାସ କରିବୁ, କାହାରିକୁ ବେଶି ବିଶ୍ୱାସ କରିବୁ ନାହିଁ । ସେହି ସ୍ଥାନ ଓ ସମୟ ଏବେ ବି ମନରେ ସାଇତା ହୋଇ ରହିଛି । ବର୍ତ୍ତମାନ ଯେଉଁ ସ୍କୁଲରେ ଅଛି ସେଠାରେ ଯୋଗଦେବା ଦିନ ଆପଣ କହିଥିଲେ- ଭଲ ଶିକ୍ଷକଟେ ହେବୁ । ଶିକ୍ଷକତା ତୋର କୌଳିକ ପେଶା । ବୋଲଗଡ଼ ଯିବା ସମୟରେ ମଧ୍ୟ ବସ୍‌ରେ ବହୁ କଷ୍ଟ କରି ମୋ ସହିତ ଯାଉଥିଲେ । ଅସହ୍ୟ ଲାଗିଲେ ବୁଝେଇ କହନ୍ତି- The one knows how to adjust is the one who knows how to survive.

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ହସିଛନ୍ତି । ବହୁବାର ମୋତେ କହିଛନ୍ତି ହସିବାକୁ । ହସିବାର ଅଭ୍ୟାସ କରିବାକୁ । ତାଙ୍କର ଏ ପରମାନନ୍ଦ ବା ନିତ୍ୟାନନ୍ଦ ଭାବର ଉତ୍ସ କ'ଣ ? ନିକଟରୁ ପଚାରିଛି, ନିକଟରୁ ପରଖିଛି, ଜାଣିବାକୁ ବହୁ ଚେଷ୍ଟା କରିଛି । ଆଧ୍ୟାତ୍ମିକ ରାଜ୍ୟରେ କିଛି ଅନୁପ୍ରବେଶ କଲାପରେ ମୁଁ ଅନୁଭବ କଲି ତାଙ୍କୁ ଓ ତାଙ୍କ ହୃଦୟର ଗଭୀରତାକୁ । ସେ ଏକ ଉପଲବ୍ଧ ସନ୍ୟାସୀ, ନିରାକାର ପରଂବ୍ରହ୍ମଙ୍କୁ ଉପାସନା, ଧ୍ୟାନ ଓ ଧାରଣା କରିବା କଷ୍ଟ ସାଧ୍ୟ । ବ୍ରହ୍ମରେ ତାଙ୍କ ମନ, ବୁଦ୍ଧି, ଚିତ୍ତ ଆବିଷ୍ଟ । ଏହା ଅତି ଜଟିଳ ରାସ୍ତା । ତେଣୁ କଷ୍ଟକର । ଶଙ୍କରାଚାର୍ଯ୍ୟଙ୍କ ଭାଷାରେ- ଯସ୍ୟ ବ୍ରହ୍ମଣୀ ରମତେ ଚିତ୍ତ, ନନ୍ଦତି ନନ୍ଦତି ନନ୍ଦତ୍ୟେବ ।

ଆନନ୍ଦ ଛଡ଼ା ଅନ୍ୟକିଛି ଭାବ ସେହି ହୃଦୟରୁ ଉଦ୍ରେକ ହୋଇପାରିବ ନାହିଁ । କାହାରି ପ୍ରତି ତାଙ୍କର ଅସୂୟା ଭାବ ନାହିଁ । ସମସ୍ତଙ୍କୁ ଭଲ ପାଆନ୍ତି । 'ମା'ରେ' ଓ 'ବାପାରେ' ସମ୍ବୋଧନ କରନ୍ତି । ପ୍ରତ୍ୟେକ ବ୍ୟକ୍ତିର ଦୁଃଖସୁଖ ଥିବ । ବ୍ୟକ୍ତି କେବେନା କେବେ ଅନ୍ୟାୟରଶିକାର ହୋଇଥିବ । କିନ୍ତୁ ତାଙ୍କର କାହା ପ୍ରତି ବିଦ୍ୱେଷ ଭାବ ନାହିଁ । ଅସାଧାରଣ ବ୍ୟତିକ୍ରମ ଉଚ୍ଚଆଶା ପୋଷଣ କରିବା ପାଇଁ ସମସ୍ତଙ୍କୁ ଉପଦେଶ ଦିଅନ୍ତି । ବହୁବାର କହିବାର ଶୁଣିଛି- ଯଦି କୌଣସି ବିଷୟ ଲାଭ କରିବା ପାଇଁ ମନରେ ଏକାନ୍ତ ବ୍ୟାକୁଳତା ଯାତହୁଏ, ଏବଂ ଅନ୍ୟ ସବୁ ଇଚ୍ଛାଠାରୁ ଯଦି ସେହି ଇଚ୍ଛାକୁ ଉଚ୍ଚ ଆସନ ଦିଆଯାଏ ତେବେ ସେ ବାସନା ନିଶ୍ଚୟ ପୂରଣ ହେବ । ସୁନ୍ଦର ସୁନ୍ଦର କଥାମାନ କହି ମନରୁ ଅନୁଶୋଚନା ଦୂର କରନ୍ତି । ୯୨ ବର୍ଷ ବୟସରେ ତାଙ୍କର ନମ୍ର ସ୍ୱଭାବ ନଦେଖିଲେ ବିଶ୍ୱାସ କରିହେବ ନାହିଁ । ଭଦ୍ରକ କଲେଜର ଅଶାନ୍ତ ପରିବେଶକୁ କିପରି ସମାଧାନ କଲେ ବୋଲି ତାଙ୍କୁ କେତେଜଣ ପଚାରିବାର ମୁଁ ଶୁଣିଛି । ସେ ଗୋଟିଏ ବାକ୍ୟରେ ଉତ୍ତର ଦେଇଥିଲେ- Always wear the costume of humility and you will receive the love and co-operation of others. ସେ ଏହି ବାକ୍ୟଟିକୁ ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରି ସମସ୍ତଙ୍କର ଶ୍ରଦ୍ଧା ଭାଜନ ହୋଇଛନ୍ତି ।

ଝଡ଼ ଆସେ, ଅଥୟ କରେ ପରିବେଶକୁ । ଥରାଇ ଦିଏ ଆକାଶକୁ । ଅଥଳ ସାଗରରେ ଭାସମାନ ଅସହାୟ ପୋତକୁ ଦିଗଭ୍ରଷ୍ଟ କରିଦିଏ । କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ପୋତ ପୁଣି ତାର ଗନ୍ତବ୍ୟ ସ୍ଥଳକୁ ଫେରିଯାଏ ବତୀଘରକୁ ଲକ୍ଷ୍ୟ କରି । ସଂସାର ସାଗରରେ ଭାସିଯାଉଥିବା ମୋ ଜୀବନ୍ ପୋତଟି ସମୟ ସମୟରେ ଦୁଃଖ ଯନ୍ତ୍ରଣା ରୂପକ ଝଡ଼ର ସମ୍ମୁଖୀନ ହୋଇ ଦିଗହରା ହୋଇପଡ଼ିଲେ ଏ ଜୀବନ ପୋତର ବତୀଘର 'ମୋ ବାପା ଓ ତାଙ୍କ ଉପଦେଶ' ମୋତେ ଉଚିତ୍ ପଥରେ ଆଗେଇ ନେବାର ନିଶ୍ଚୟ ସାହାଯ୍ୟ କରିବ । ଠାକୁରଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା- ଆଉ ଥରେ ମୋତେ ତାଙ୍କର ସନ୍ତାନ ହେବାର ସୁଯୋଗ ଦିଅନ୍ତୁ । ବହୁତ କିଛି ତାଙ୍କଠାରୁ ମୋର ଶିଖିବାର ବାକି ରହିଗଲା । ସେତ ଭକ୍ତୋତ୍ତମ । କୋଟିକରେ ଗୋଟିଏ ସେ । ଅନନ୍ତ ଆକାଶରେ ସ୍ଥାନ ପାଇସାରିଛନ୍ତି । ସେ ଆଶୀର୍ବାଦ କଲେ ମୋ ଏ ଜନ୍ମ ସାର୍ଥକ ହେବ ।



# ମାନବିକତାର ରଜା, ଶହୀଦନଗର ଅଜା

**ସତ୍ୟସ୍ୱରୂପ (ଗଗଲୁ)**

ସଂଢ ହୋଇ ନଥାଏ । ଅଳ୍ପ ସମୟ ବାକି ଥାଏ । ମୋ ଅଜା ଦିବଂଗତ ଶତ୍ରୁଘ୍ନ ନାଥ ୬୮୯ ଫ୍ଲାଟ୍‌ର ଗେଟ୍ ଭିତରେ ଶୂନ୍ୟ ଆକାଶକୁ ଚାହିଁ ପ୍ରାର୍ଥନା କରୁଥାନ୍ତି । ମୁଁ ଗେଟ୍ ବାହାରେ ଥାଇ ଅପଲକ ନୟନରେ ଚାହିଁ ଥାଏ ଓ ଶୁଣୁଥାଏ । 'ହେ ପରମବ୍ରହ୍ମ, ସମସ୍ତଙ୍କୁ ରକ୍ଷା କର । ସମସ୍ତେ କୁଶଳରେ ରହନ୍ତୁ । ସମାଜକୁ ରକ୍ଷାକର । ଯୁବ ସମାଜକୁ ରକ୍ଷାକର ।' ଶେଷ ପଦକ ଭୀମ ଭୋଇଙ୍କ ମହାନବାଣୀ – 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।' ସଞ୍ଜ ଓ ସକାଳେ ଦୁଇବେଳା ତାଙ୍କ ପ୍ରାର୍ଥନା । ପରେ ଜାଣିଲି ପଚାଶ ବର୍ଷରୁ ଅଧିକ ହେବ ତାଙ୍କର ଏହି ପ୍ରାର୍ଥନା ।

ଜିଜ୍ଞାସୁ ହୋଇଛି । ଉତ୍ତର ପାଇଛି କାହାରି ଅମଙ୍ଗଳ କାମନା କରିବା ନାହିଁ । ସମସ୍ତଙ୍କର ମଙ୍ଗଳ କାମନା କରିଚାଲିଥିବା । କଥା, କାମ ଓ ଚିନ୍ତାରେ ଚରାଚର ହିତାୟ ହୋଇଛି ଜୀବନବ୍ୟାପି ସାଧନା । ତାଙ୍କ ଆତ୍ମଜୀବନୀ ପୁସ୍ତକର ନାମ ରଖିଲେ 'ଚରାଚର ହିତାୟ' ।

ବହୁତ ସମୟ ତାଙ୍କ ପାଖରେ ବସିଛି । କଥା ସେ କୁହନ୍ତି । ମୁଁ ମନ ଦେଇ ଶୁଣେ । ମୋତେ 'ଭାଇ' ବୋଲି ଡାକନ୍ତି । ମୋ ନାମ ନିଜେ 'ସତ୍ୟ ସ୍ୱରୂପ' ଦେଇଛନ୍ତି । ଭଲ ମଣିଷ ହେବାକୁ ଚେଷ୍ଟାକର । ଭଲ ମଣିଷ ସମାଜ ପାଇଁ ଆବଶ୍ୟକ । ଭଲ ମଣିଷ ହୋଇଗଲେ ଆଉ ସବୁ ଆପେ ଠିକ୍ ହୋଇଯିବ । ଆଚାର୍ଯ୍ୟ ହରିହର ଓ ସ୍ୱାମୀ ବିବେକାନନ୍ଦଙ୍କ କଥା ସବୁବେଳେ କୁହନ୍ତି ।

ମୁଁ ତାଙ୍କଠାରେ କେବେ ବିରକ୍ତିଭାବ ଦେଖିନାହିଁ । ମୁହଁରେ ସବୁବେଳେ ହସ । ଅନ୍ତର ଭିତରର ସେ ହସ । ମୁଁ ସିଲଚରରେ ପାଠପଢୁଥିବାବେଳେ ନିଜ ହାତରେ ଚିଠି ଲେଖି ପଠାନ୍ତି । ଏପର୍ଯ୍ୟନ୍ତ ସମସ୍ତ ଚିଠି ସାଇତି ରଖିଛି । ଖୁବ୍ ସୁନ୍ଦର ଅକ୍ଷର । ଅନ୍ୟକୁ ଗଢ଼ି ତୋଳିବାର ଭାଷା, ନିଜର କରିବାର କୌଶଳ । ତା. ୨୯.୯.୨୦୦୧ରେ ମୋ ପାଖକୁ ଦେଇଥିବା ଗୋଟେ ଚିଠିର ନକଲ ଏଠାରେ ପ୍ରଦାନ ନକରି ରହିପାରୁନି ।-

ପରମ କଲ୍ୟାଣ ବରେଷୁ, ଶ୍ରୀମାନ ଗଗଲୁ (ସତ୍ୟ)

ସତ୍ୟମେବ ଜୟତେ । ସେଥିପାଇଁ ସମସ୍ତଙ୍କ ସହିତ ମେଳ ରଖି କାମ କରିବ । ସମସ୍ତଙ୍କୁ ବୁଝି ବୁଝାଇ ଚଳିଲେ ସତ୍ୟ ସମସ୍ତଙ୍କ ହୃଦୟରେ ବିରାଜିବ । କୁଶଳରେ ରହିବ ।

ଅଜାବୁଢ଼ାର ଶୁଭାଶୀଷ ।

ଶତ୍ରୁଘ୍ନ ନାଥ

ମୋ ଅଜା ଲଣ୍ଡନ ଫେରନ୍ତା । ବହୁ ଉଚ୍ଚ ଆସନରେ ପ୍ରତିଷ୍ଠିତ । ତାଙ୍କ ଜୀବନଶୈଳୀ ଅତ୍ୟନ୍ତ ନିରାଡମ୍ବର । ଜଣେ ନଦେଖିଲେ ବିଶ୍ୱାସ କରିବ ନାହିଁ । ସବୁ ଭୋଗ କରି, ସେ ଭୋଗରୁ ନିଜକୁ ଓହରାଇ ଆଣିବାରେ କି ସାଧନା ! ଏହା କେବଳ ନିଷ୍ଠାବାନମାନେ କରିପାରିବେ । ଶ୍ରଦ୍ଧାବାନମାନେ କରିପାରିବେ । ଜଣେ ତପସ୍ୱୀ ପକ୍ଷେ ଏହା ସମ୍ଭବ । ମୋ ଅଜା ଯଥାର୍ଥରେ ମାନବିକତାର ରଜା ।

# ଜଣେ ସାର୍ଥକ ଗୃହୀ-ସନ୍ନ୍ୟାସୀ

**ଡ. ଦୋଳଗୋବିନ୍ଦ ଶାସ୍ତ୍ରୀ**

ଆଚାର୍ଯ୍ୟ ଶ୍ରୀ ଶତ୍ରୁଘ୍ନ ନାଥ ସ୍ଥୂଳ ଚକ୍ଷୁର ଅଦୃଶ୍ୟ ଲୋକକୁ ଚାଲିଗଲେ । ସେ ଥିଲେ ପ୍ରକୃତ ଆଚାର୍ଯ୍ୟ । ତାଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟାରେ ତାଙ୍କର ପ୍ରତ୍ୟେକ ଉପଦେଶ ଆଚରଣରେ ପ୍ରତିଫଳିତ ହେଉଥିଲା । ସେ ଥିଲେ ଓଡ଼ିଶାର ଏକ ଜୀବନ୍ତ ଶିକ୍ଷାୟତନ । ତାଙ୍କର ଉପମା ସେ ନିଜେ । ଅନ୍ୟ ଉପମା ଖୋଜିଲେ ମିଳିବା ଦୁଷ୍କର । ବିଦ୍ୟା ଦୁଇ ପ୍ରକାର । ଅପରା ଓ ପରା । ଅପରୟା ମୃତ୍ୟୁ ତିର୍ତ୍ୱା ପରୟା ଅମୃତମ୍ ଅଶ୍ନୁତେ- ଏହା ହିଁ ଉପନିଷଦର ଶିକ୍ଷା । ଅପରା ବିଦ୍ୟା ଗଣିତ, ଭୂଗୋଳ, ବିଜ୍ଞାନ ଇତ୍ୟାଦି । ଏହାଦ୍ୱାରା ଜୀବନ ସାର୍ଥକ ହୁଏ । ପରାବିଦ୍ୟା ଦ୍ୱାରା ଅମୃତଲୋକ ପ୍ରାପ୍ତି ହୁଏ । ଶ୍ରୀ ଶତ୍ରୁଘ୍ନ ନାଥ ଥିଲେ ଏହି ଉଭୟ ବିଦ୍ୟାର ତପସ୍ୟା, ଜ୍ଞାନ ଓ ଆଦର୍ଶର ମୂର୍ତ୍ତିମନ୍ତ ବିଗ୍ରହ । ଏକ ଉଜ୍ଜ୍ୱଳ ଆଲୋକବର୍ତ୍ତିକା । ତାହା ୧୦.୩.୨୦୦୬ ରାତି ୧୧.୩୦ ମିନିଟ୍‌ରେ ନିର୍ବାପିତ ହୋଇଗଲା । ମହାତ୍ମା ଗାନ୍ଧୀଙ୍କର ଯେଉଁ ମୌଳିକ ଶିକ୍ଷା ସମଗ୍ର ଭାରତ ତଥା ଓଡ଼ିଶାବାସୀଙ୍କୁ ସ୍ୱାବଲମ୍ବୀ ହେବାର ଭିତ୍ତିଭୂମି ଗଠନ ପାଇଁ ଅଭିପ୍ରେତ ଥିଲା । ଓଡ଼ିଶାରେସେଇ ମୌଳିକ ଶିକ୍ଷାର ଭିତ୍ତିକୁ ସୁଦୃଢ଼ କରିବାରେ ଶ୍ରୀ ଶତ୍ରୁଘ୍ନ ନାଥ ନିଜର ସମଗ୍ର ସତ୍ତା ଉତ୍ସର୍ଗ କରି ଯାଇଛନ୍ତି । ତାଙ୍କର ସେଇ ଋଣ ଓଡ଼ିଶାବାସୀଙ୍କୁ ଚିରଦିନ ପାଇଁ ଭାରାକ୍ରାନ୍ତ କରି ରଖିଥିବ । ତାଙ୍କର ଶେଷ ନିଃଶ୍ୱାସର ପୂର୍ବ ମୁହୂର୍ତ୍ତଟି ହର୍ଷ-ବିଷାଦର ଏକ ଦିବ୍ୟ ଆଲେଖ୍ୟ । ଜ୍ୟେଷ୍ଠପୁତ୍ର ରବୀନ୍ଦ୍ର ଓ ପୁତ୍ରବଧୂ କଲ୍ୟାଣୀମୟୀ ଗୀତାର ଦୁଇବର୍ଷ ଯାବତ୍ ଶଯ୍ୟାଶାୟୀ ଅବସ୍ଥାରେ ନିରଳସ ଭକ୍ତି ପୂତ ସେବା ଲାଭ କଲେ । ଶେଷ ମୁହୂର୍ତ୍ତରେ ଗୀତା ଖୁଆଇ ଦେବା ପରେ ତାର କପାଳ ଓ ମୁଖରେ ହାତ ବୁଲାଇ ଆଣିଲେ; ରବୀନ୍ଦ୍ରର କୋଳରେ ଶୋଇଯାଇ ଆଖିବୁଜି ନିଦ୍ରା ଗଲେ- ଏ ନିଦ୍ରା ଥିଲା ମହାନିଦ୍ରା । କେତେଜଣ ବୃଦ୍ଧ ପିତାଙ୍କର ଏ ସୌଭାଗ୍ୟ ଘଟେ ? କେତେଜଣ ପୁତ୍ର-ପୁତ୍ରବଧୂଙ୍କର ଏ ସୌଭାଗ୍ୟ ଘଟେ !!! ଶ୍ରୀ ନାଥଙ୍କର ବିଶାଳ ପରିବାର । ଦୁଇପୁତ୍ର, ପଞ୍ଚ କନ୍ୟା ଓ ଜାମାତା । ପ୍ରତ୍ୟେକ ସ୍ୱ-ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ ଓ ସୁଖ୍ୟାତ । ଶ୍ରୀନାଥଙ୍କର ଗୃହସ୍ଥ ଜୀବନ ମଧ ସାର୍ଥକ । ସେ ଥିଲେ ଏକ ଆଦର୍ଶ ଗୃହୀ-ସନ୍ନ୍ୟାସୀ । ଏ ପ୍ରକାର ଜୀବନ ଅନୁସରଣୀୟ- ଏଥିରେ ଦ୍ୱିମତ ନାହିଁ ।

ତାଙ୍କର ଶୋକାକୁଳ ପରିବାରକୁ ସାନ୍ତ୍ୱନା ଦେବାର ଭାଷା ମୋର ନାହିଁ ।

ତାଙ୍କର ଆତ୍ମା ପରମପଦ ଲାଭ କରୁ, ଏହା ହିଁ କାମନା ।



# ସ୍ମୃତିରୁ ଖିଏ

ଡ. କୈଳାସ ଚନ୍ଦ୍ର ନାଥଶର୍ମା(ମ)

ଅସାଧାରଣ ପରିସ୍ଥିତିରେ ଅଲୌକିକ କାର୍ଯ୍ୟସାଧନ କରି ମହାନ୍ ହେବା ବ୍ୟକ୍ତି ଇତିହାସରେ ଆମେ ପାଉ । ମାତ୍ର ଦୈନନ୍ଦିନ ସାଧାରଣ ଜୀବନରେ ନିଜର ଆଚରଣ ଏବଂ କାର୍ଯ୍ୟରେ ଅତି ସାଧାରଣ ମନେ ହେଲେ ମଧ ତାହା ଉଷାର ଶୀତଳ ଶିଶିରକଣା ପରି ସନ୍ତପ୍ତ ଜୀବନକୁ ଶାନ୍ତକରେ । ଏଭଳି ବ୍ୟକ୍ତିବିଶେଷ ଅନନ୍ୟ । ଏହା ପଛରେ ରହିଥାଏ ଉଦାର ହିତୈଷିଣୀ ମନୋଭାବ ଏବଂ ସମବେଦନା । ଶତ୍ରୁଘ୍ନ ନାଥଙ୍କ ଦୈନନ୍ଦିନ ଜୀବନ ଏହାର ଏକ ଦୃଷ୍ଟାନ୍ତ । ତାଙ୍କର ବ୍ୟକ୍ତିତ୍ୱ ଏବଂ କର୍ମର ମୂଲ୍ୟାୟନ ତାଙ୍କର ସହକର୍ମୀ, ଛାତ୍ର ତଥା ଗୁଣଗ୍ରାହୀ ବନ୍ଧୁ ତଥା ସମାଲୋଚକ କରିବେ । ଜଣେ ଆତ୍ମୀୟ ଭାବରେ ମୁଁ ଏ ବିଷୟରେ ଅବତାରଣା କରିବା ଅତିରଞ୍ଜିତ ମନେହେବା ଆଶଙ୍କା । ତେଣୁ ତହିଁରୁ ବିରତ ହୋଇ ଘଟଣାବହୁଳ ସ୍ମୃତିରୁ ମୁଁ କେତୋଟି ଉଲ୍ଲେଖ କରୁଛି ।

କଲେଜ ଛାତ୍ରାବସ୍ଥାରେ ଶତ୍ରଘ୍ନ ବାବୁ ରାୟବାହାଦୂର ଯଦୁନାଥ ମହାପାତ୍ରଙ୍କ କଟକ ବସାରେ ରହୁଥିଲେ ଏବଂ ମହାପାତ୍ର ଦମ୍ପତିଙ୍କର ମାନସପୁତ୍ର ଦୃଷ୍ଟିରେ ଯଦୁବାବୁଙ୍କ ପୁତ୍ରକନ୍ୟା ମାନେ ତାଙ୍କୁ ଭାଇବୋଲି ଜ୍ଞାନ କରୁଥିଲେ । ପରବର୍ତ୍ତି କାଳରେ ସେମାନେ ତାଙ୍କଠାରେ ଏକ ଦେବତ୍ୱର ଆଭାସ ଥିବା ଅନୁଭବ କରିଥିଲେ । ଯଦୁବାବୁଙ୍କ କନ୍ୟା ବୀଣାଙ୍କ ଏକମାତ୍ର ପୁତ୍ର କିଶୋର ବୟସରେ ବିପଥଗାମୀ ହେଉଥିଲେ ଏବଂ ତାଙ୍କୁ ଖୁବ୍ ମନସ୍ତାପ ଦେଉଥିଲେ । ଥରେ ସେ ଶତ୍ରୁଘ୍ନବାବୁଙ୍କୁ ଡକାଇ ଅନୁରୋଧ କଲେ, 'ଭାଇ, ତୁ ମୋର ପୁଅକୁ ଛୁଇଁଦେ, ସେ ସତ୍‌ପଥକୁ ଆସିଯିବ ।' ସତରେ ପରବର୍ତ୍ତୀ କାଳରେ ସେ ପିଲା ସୁଧୁରି ଯାଇଥିଲା ।

ଅନ୍ୟ ଏକ ଘଟଣା ଘଟିଲା ଯଦୁନାଥବାବୁଙ୍କ ଶେଷ ଶଯ୍ୟାରେ । ବାଲେଶ୍ୱର ଘରେ ଯଦୁବାବୁଙ୍କ ଅନ୍ତିମକାଳ । ପାଖରେ ଆତ୍ମୀୟ ସ୍ୱଜନ ଘେରି ରହିଛନ୍ତି । ଅପ୍ରତ୍ୟାଶିତ ଆବିର୍ଭାବ ହୁଏ ଶତ୍ରୁଘ୍ନ ନାଥଙ୍କର । ତାଙ୍କର କୋଳରେ ମଥା ରଖି ଯଦୁବାବୁ ଶେଷ ନିଶ୍ୱାସ ତ୍ୟାଗ କଲେ । ଅଥଚ ତାଙ୍କଘରୁ ପୂର୍ବରୁ ଶତ୍ରୁଘ୍ନବାବୁଙ୍କ ପାଖକୁ ଖବର ଦିଆଯାଇ ନଥିଲା । ମୁଁ ଅବନୀବାବୁଙ୍କ ମୁହଁରୁ ଏକଥା ଶୁଣିଛି । ଅବନୀବାବୁ କହିଲେ, 'ଶତ୍ରୁଘ୍ନଠାରେ କିଛି ଦୈବୀଶକ୍ତି ଅଛି । ତା' ନହେଲେ ସେ କିପରି ଭୁବନେଶ୍ୱରରୁ ଆମ ଘରେ ଆସି ପହଞ୍ଚନ୍ତା !'

ମୋ ଜୀବନର ଏକ ଘଟଣା । ୧୯୬୧ ରେ ମୁଁ ରାଜ୍ୟଗୋଷ୍ଠୀ ବୃତ୍ତିଲାଭ କରି ୧୯୬୧ ଶିକ୍ଷାବର୍ଷରେ ନ୍ୟୁଜିଲାଣ୍ଡରେ ସ୍ନାତକୋତ୍ତର ଅଧ୍ୟୟନ ପାଇଁ ମନୋନୀତ ହେଲି । ଏହାକୁ ୧୯୬୨କୁ ସ୍ଥଗିତ ରଖିଲେ ସେତେବେଳକୁ ମୋର ସରକାରୀ ସେବା ତିନିବର୍ଷରୁ ଅଧିକ ହୋଇଥିବ ଏବଂ ଅଧ୍ୟୟନ ପାଇଁ ଡେପୁଟେସନ ଛୁଟି ଦରମା ପାଇଁ ଯୋଗ୍ୟ ହେବି । ତାହା ହେଲେ ମୋ ଅନୁପସ୍ଥିତିରେ ଏଠାରେ ପରିବାର ଚଳିଯିବେ । କଥାଛଳରେ ମୋର ଜଣେ ପ୍ରଫେସର ଏହି ଉପଦେଶ ଦେଲେ । ମାତ୍ର ଶତ୍ରୁଘ୍ନବାବୁଙ୍କ ମତଥିଲା- 'ପ୍ରଥମ ସୁଯୋଗ ସର୍ବୋତ୍‌କୃଷ୍ଟ ନହେଲେ ମଧ ଗ୍ରହଣୀୟ, ତାହା ହାତଛଡା କରିବା ବିଜ୍ଞତା ନୁହେଁ ।' ତାଙ୍କର ଏହି ଉକ୍ତିର ଯଥାର୍ଥତା ମୁଁ ଅନୁଭବ କଲି ୧୯୬୨ରେ ଯେତେବେଳେ ଭାରତ-ଚୀନ ସୀମା ସଂଘର୍ଷ ଘଟିଲା ।

ମୋର ଯାତ୍ରା ସ୍ଥଗିତ ରଖିଥିଲେ ତାହା ଦିବାସ୍ୱପ୍ନ ହୋଇ ରହିଯାଇଥାନ୍ତା । ସତେ ଅବା ତାଙ୍କର ପରାମର୍ଶ ଈଶ୍ୱର ଅଭିପ୍ରେତ ଥିଲା ।

ମହାପୁରୁଷଙ୍କ ଭାଷାରେ ସରଳ ଜୀବନ ଏବଂ ଅନାବିଳ ହୃଦୟ ସ୍ୱଚ୍ଛଦର୍ପଣ ପରି ଭଗବତ୍ ପ୍ରକାଶ ପ୍ରତିଫଳନ କରେ । ଯିଏ ତାଙ୍କ ସାନ୍ନିଧ ଲାଭ କରିଛି ସେ ଏହା ଅନୁଭବ କରିବେ । ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଇ ତାଙ୍କର ଆଶୀର୍ବାଦ ଯୋଗ୍ୟହୁଏ, କାମନା ।

# ଅନନ୍ୟ ଅଜା

ଅନୁପମା ନାଥଶର୍ମା

ବାଣୀବିହାରରେ ସ୍ନାତକୋତ୍ତର ଶିକ୍ଷାଲାଭ କାଳରେ ମୁଁ ୨ଟିବର୍ଷ ଅଜା-ଆଈଙ୍କ ଘରେ ରହୁଥିଲି ଏବଂ ସେମାନଙ୍କ ନିବିଡ଼ ସଂପର୍କରେ ଆସିବା ସୌଭାଗ୍ୟ ଲାଭ କରିଥିଲି । ତାଙ୍କ ରଚିତ ପ୍ରବନ୍ଧଏବଂ ପୁସ୍ତକଗୁଡ଼ିକ ଅନୁଧ୍ୟାନ କରି ମୁଁ ବିସ୍ମିତ ହୋଇଥିଲି । ଶିକ୍ଷା, ଦର୍ଶନ ତଥା ପ୍ରଚଳିତ ସାମାଜିକ ସମସ୍ୟା ସଂପର୍କିତ ସମସାମୟିକ ବିଷୟ ବ୍ୟାପକ କ୍ଷେତ୍ରକୁ ଆଧାର କରି ସେ ଆଲୋଚନା କରୁଥିଲେ । ଆକାଶବାଣୀ, ଦୂରଦର୍ଶନ ଏବଂ ପତ୍ରପତ୍ରିକା ପ୍ରକାଶନ ତାଙ୍କର ଲେଖା ଏବଂ ବକ୍ତବ୍ୟଗୁଡ଼ିକୁ ରେକର୍ଡିଂ କରିବାକୁ ବାରମ୍ବାର ଆସନ୍ତି । ତାହାଛଡ଼ା ସଭାସମିତିରେ ଯୋଗଦେବାକୁ ବହୁ ନିମନ୍ତ୍ରଣ ମିଳେ । ମୋର ସ୍ନାତକୋତ୍ତର ଶିକ୍ଷା ବିଷୟ ଭିନ୍ନ ହେଲେ ମଧ ଅଜା ଆମକୁ ଆମ ବିଷୟ ସଂପର୍କିତ ପ୍ରଶ୍ନ ପଚାରୁଥିଲେ । ଆବଶ୍ୟ ସ୍ଥଳେ ସନ୍ଦେହ ଦୂର କରୁଥିଲେ । ତାଙ୍କର ଆଜୀବନ ଶିକ୍ଷା ଅନୁସନ୍ଧାନ, ଛାତ୍ରବତ୍ସଳତା ଏବଂ ସ୍ନେହଶ୍ରଦ୍ଧା ସହିତ ଶୃଙ୍ଖଳିତ ଜୀବନ, ନୈତିକ ମୂଲ୍ୟବୋଧ ଏବଂ ଦୃଢ଼ ଆତ୍ମବିଶ୍ୱାସ ପୋଷଣ କରିବା ପାଇଁ ଉତ୍ସାହ ଦେବା ଆମକୁ ଅଭିଭୂତ କରେ । ତାଙ୍କର ଆଶୀର୍ବାଦରୁ ମୁଁ ଶିକ୍ଷକ ଜୀବନରେ ପାଦଦେଲି । ମାତ୍ର ତାଙ୍କଭଳି ଜଣେ ଶିକ୍ଷକ ମୁଁ ଦେଖୁନାହିଁ ବା ତାଙ୍କ ପରି ମୁଁ ହୋଇପାରିବି ଭରସା ନାହିଁ । ତଥାପି ତାଙ୍କର ପ୍ରଦର୍ଶିତ ପଥର ପଥିକ ହୋଇ ମୁଁ ଅବିରାମ ସଂଘର୍ଷ କରୁଥିବି ଏବଂ ତାଙ୍କୁ ମନେ ପକାଉଥିବି । ତାଙ୍କର ଘଟଣାବହୁଳ ଜୀବନର ସଂଘର୍ଷ, ଘାତପ୍ରତିଘାତ, କୃତି ଅକୃତିର କାହାଣୀସବୁ ତାଙ୍କ ରଚିତ ପ୍ରବନ୍ଧ ଏବଂ ପୁସ୍ତକରେ ପ୍ରକାଶ ପାଇଛି । ଆଧୁନିକ ଯୁବପିଢ଼ିକୁ ତାହା ଆଶା ଏବଂ ଆଲୋକବର୍ତ୍ତିକା ଦେଖାଇ ନିରାଶାର ଅନ୍ଧକାର ଦୂରକଲେ ତାହା ତାଙ୍କ ପ୍ରତି ଯଥୋଚିତ ସମ୍ମାନ ହେବ । ୩ବର୍ଷ ତଳେ ଆଈ ତାଙ୍କୁ ଛାଡ଼ିଦେଇ ସ୍ୱର୍ଗାରୋହଣ କଲେ । ଏବେ ଅଜା ତାଙ୍କ ସ୍ୱର୍ଗର ସାଥିହେବେ । ଉଭୟଙ୍କ ଉଦ୍ଦେଶ୍ୟରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଦେଉଛି ।



# Our Loving Bada Ajaa

**Shilpa Anupurba**
(Pupli Mama)

Bada Aja is no more. I couldn't believe my ears when I heard this news from Maa on 11th March. I had met him just a month earlier. He had shared jokes with me and offered biscuits.

Being his eldest daughter's eldest grand daughter I was his loving and pet great grand child. He used to call me 'Pupli Mama'. He was so happy when I got admission into the medical college last year. He did not live longer to giveme an opportunity to serve him as a doctor. Before my examinations he used to convey his best wishes and blessings over phone and he was a source of hope and inspiration for me. I shall feel his loss for a long time to come.

His son, three sons-in-law, two grandsons and one grand daughter-in-law are doctors and among the 4th generation I am the first to enter the medical profession through his blessings and my luck. The beacon light he has shown us, I hope, will make me and all great grandchildren worthy of his expectations. I pay my respectful homage to his immortal soul.

# He can never die

**Anisha Avijeeta (Bubu)**

Great Grandpa will never die
When will the stream stop flowing,
Under my eye ?
When will the clouds stop raining,
Over the sky ?
When will the heart stop beating
and the man die
Never ! Never !! Never !!

The stream will flow
the cloud will rain
The heart will beat
and never will defeat.

What way does he come ?
What way does he go ?
He rides over the water,
and over the snow,
only the scholars in India know.

Without either sign or sound he went,
the waves of the sea followed his tent,
So, high he rose, so high fell,
Alarming people by ringing the bell.

The fog can overspread the sky,
the rose can give sweetness to the passerby,
I can see the sun so high,
But Great Grandpa will never die.

# The light is gone

**Sikta Suman (Lolly)**

When the waves of the sea did roar
My Great Grandpa was no more
The light of our life is gone
Like a sun, for us, he has shone.

Very friendly, very loving
Always caring and giving
Like a lamp he was burning
To give light to those who are suffering.

That ill fated Tenth (March) night
Filled all of us with fright
Our great Grandpa has left
When the whole world has slept.

Today, when he is no more
The sun shines
The sea roars
But the light he has shown us
Is no more ! Is no more !!



# Next to god for me

**Kukumuna**

'Be Bold', 'Be Strong', 'Be cheerful' - still vibrates my mind when I passed plot no. 689 every morning. Only to listen to this much I had been coming to Sahidnagar since 4 years.

A powerful voice, an effective order and a warm godly blessing realy made me bold.

In the last few months, I got an opportunity to share certain glorious moments with Him. I have collected those memorable moments in my diary. His advice and talk will guide me through out my life. I think I had done certain good deeds in my past life, that in this birth I have got a chance to be a tiny member of his big family.

In a very small world he is my 'Aja', but in my deep thought he is a man of discipline, a man of spirituality, a man of ethics. He is next to God for me.

# He was a good guy...

**Dhirendra Kumar Nath**

I did not know how to tell my bus, that my father passed away. However after a long thought, I picked up the phone. It was Saturday morning. I was still hesitant. I dialed the number and he answered what up... I said my father passed away... There was a litte bit of silence. He said I am sorry. I gave him a brief account of what happened. Then I said he was a good guy and I will miss him.

I kept the phone and thought what I just told him. This is how I see others talk. This is how he is to everybody. A person who all his life somehow or the other helped others through his good advice and wisdom. One would always get some satisfaction out of him and he would have something remarkable to tell and advice which one would not even imagine. This is the good guy who lived in 689 Sahidnagar and just meeting him is good enough for many. I am probably being ever qualified to talk about him. My writing about him on this is an attempt, which I would like to apologize to his numerous students and to God.

He was my dear father. I was blessed to be born and for him I would always be proud of. Not to tell how sweet my mother was.

Now, let us talk about this good guy. At many times I was told by people visiting him that they would like to have a Darshan. As if they are visiting a temple. After all what do they get out of meeting him ? I am sure he has no money to give, he even does not have any political contact, not even a doctor, not a magician. Then why there was a flow of people and what do they get meeting him ? My mother used to get annoyed, but then it used to happen each day and everyday. All these people get something from him and go and come back again to have a Darshan.

This guy had years and years of devotion towards education, simple practical life and faith in God and himself. The honours he received speak about it.

Nothing changed him till the end. The smile on his face and the witty remarks for everything would be a part of my thought and prayer. I was lucky and blessed to be present on his 91st birth day and captured both in mind



and through photographs. What I felt and experienced is my own and I can express it. Sometimes I wondered as to what he is made of. People bow infront of him just to get his blessings one after another. I felt I should also stand and bow like others to feel what it is. But then he was my father, he has given this opportunity which is good enough and I would be thankful for this life.

I will truly miss him.....

# The Sun Has Set

**Nirupama Nathsarma**

The news of passing away of my grandfather gripped me with grief and cold sweat on the ill fated night on 10th March. The next morning I reached his Bhubaneswar residence to see his old familiar calm and serene face lying on a bed. I had spent continuous two years in this house in the pleasant company of my Aja and Aai in 1985-87 when I was doing my post-graduate studies at Vani Vihar. I used to help him search out his books from his vast collections whenever he wanted some refence. I often took down dictations of his articles, forewords for publication in journals and souveniers for which he was being continually approached by editors/ publishers. I then realized how deeply learned and widely enlightened he was.

Though a pioneer in the field of Basic Education in Orissa, there was no unexplored field, be it primary, secondary or higher education, teachers training and education of teachers' plight, moral education, adult and non-formal education on which he could eloquently speak or write.

To me he shone like a bright sun and lit my path and in whom I found my destination to finally land in a teacher's carrier. The unforgettable love, affection and guidance which I received from both of my grandparents will be remembered throughout my life. She had left us three years earlier and he is no more amongst us. A great gift of God has been snatched away, but we will remain proud of sharing his blood.

May his soul rest in eternal peace.

# Eternal Peace

**Sankalpa Anukul (Bapun)**

He has now left this mortal world and shines among the stars. Can you guess who he is ? He is my Great Grandpa, an educationist par excellence, an author of many awards and above all a noble hearted man who loved one and all. We, his great grand children, had a special kind of relationship with him. He was full of fun, frolic and humour in our company. As a child I use to fight with my mother as to who was greater-her grandfather or my grandfather who is a doctor and a medical professor. But now I understand his noble and great personality when messages of condolence pour in from all quarters. Being a part of his blood his memory will remain a source of inspiration to march on and on towards destination in life. Always dressed in Khadi white Punjabi and Dhoti he appeared to me as a symbol of peace and tranquility when I had a last glimps of him.

May he enjoy heavenly peace.



## ଅଲେଖ ପରଂବ୍ରହ୍ମ ଶରଣ... ବ୍ରାହ୍ମ ମୁହୂର୍ତ୍ତରେ ଉପାସନା







ପତ୍ନୀଙ୍କ ଦଶାହରେ ଦରିଦ୍ର ନାରାୟଣ ସେବା

ଅଲେଖ ବାବାଙ୍କ ଠାରୁ ଆଶୀର୍ବାଦ ଭିକ୍ଷା କରୁଛନ୍ତି ପ୍ରଫେସର ଶତ୍ରୁଘ୍ନ ନାଥ

ବାୟୁ ରନିଳମମୃତମଥେଦଂ ଭସ୍ମାନ୍ତଂ ଶରୀରମ୍
ଓଁ କ୍ରତୋ ସ୍ମର କୃତଂ ସ୍ମର କ୍ରତୋ ସ୍ମର କୃତଂ ସ୍ମର ।

(ଯଜୁଃର୍ବେଦ-୪୦/୧୫)

ବର୍ତ୍ତମାନ ମୋର ପ୍ରାଣବାୟୁ ମହାବାୟୁରେ ମିଳିତ ହେଉ,
ଏହି ଦେହ ଭସ୍ମୀଭୂତ ହେଉ, ହେ ସଂକଳ୍ପାତ୍ମକ ମନ ।
ବର୍ତ୍ତମାନ ତୁମର ଅନୁଷ୍ଠିତ କର୍ମ ଓ କର୍ତ୍ତବ୍ୟ ବିଷୟ ସ୍ମରଣ କର ।

